# ବନ୍ଧୁ ମହାନ୍ତି



ଶ୍ରୀ ଅଶ୍ୱିନୀକୁମାର ଘୋଷ

# ବନ୍ଧୁ ମହାନ୍ତି

ପ୍ରଣେତା—
ଶ୍ରୀ ଅଶ୍ୱିନୀକୁମାର ଘୋଷ ଏମ୍. ଏ.,
ନାଟ୍ୟରତ୍ନାକର, ନାଟ୍ୟଭାରତୀ

# BANDHU MAHANTY

( A True Oriya Drama )

By

Sri Aswini Kumar Ghosh, M.A.,
Natya-Ratnakar, Natya-Bharati

ମୂଲ୍ୟ ଛଅ ଟଙ୍କା ପଚିଶ ପଇସା

ପ୍ରକାଶକ—
ଶ୍ରୀ ଦାଶରଥି ଦାସ
ଦାଶରଥି ପୁସ୍ତକାଳୟ
ବାଲୁବଜାର
କଟକ-୨

ଦ୍ୱିତୀୟ ମୁଦ୍ରଣ
୧,୦୦୦
ତା ୨।୮।୯୫୫

ମୁଦ୍ରାକର
ଶ୍ରୀ ଅଜୟକୁମାର ଘୋଷ
ଶ୍ରୀ ହରନାଥ ପ୍ରେସ୍
କଟକ-୨

# ଦ୍ୱିତୀୟ ସଂସ୍କରଣର ମୁଖବନ୍ଧ

ମୁଁ ପ୍ରଥମ-ସଂସ୍କରଣଟି ଛପା ହେଲା ବେଳେ, ପାଣ୍ଡୁଲିପି ସଂସ୍କାର ବା ପ୍ରୁଫ୍ ଦେଖିବାର ସୁଯୋଗ ପାଇ ନଥିଲି । ସେଥିପାଇଁ ନାନା ଦୋଷ ତ୍ରୁଟି ରହିଯାଇଥିଲା । ବର୍ତ୍ତମାନ ବହିଟିକୁ ଅମୂଳଚୂଳ ପଢ଼ି, ପରିମାର୍ଜିତ କରିପାରିଛି ବୋଲି ମନେକରେ । ପ୍ରଥମ ସଂସ୍କରଣର ପାଠକେ ମୋତେ କ୍ଷମା ଦେବେ । ଇତି ।

ଲେଖକ

# ନାଟ୍ୟୋଲ୍ଲିଖିତ ସ୍ତ୍ରୀ ଓ ପୁରୁଷ

## ସ୍ତ୍ରୀ

| | |
|---|---|
| ବନ୍ଧୁପତ୍ନୀ | ଲଛମୀବାଈ |
| ନିର୍ମଳା | ମାହାସ୍ୱା |
| ଶୋଭ | ଭିକାରୁଣୀ, ବ୍ରାହ୍ମଣୀ, ଶବରୁଣୀ, ପାର୍ବତୀ |
| ରୁଲି | ଘାଁ ବାଳବାଗଣ |

## ପୁରୁଷ

| | |
|---|---|
| ବନ୍ଧୁମହାନ୍ତି | ଅଇଁଠା |
| ନାରାୟଣ | ଭିକାରି, ଶବର, ମହାଦେବ |
| ବାଞ୍ଛାରାମ | ଶିବା |
| ଗୋବିନ୍ଦ | ମାଧୋଇ |
| ନଟବର | ଗଣ୍ଠିକଟା |
| ପଧାନ | ରାଜା |
| ହଳଧର | ବୁଢ଼ାବ୍ରାହ୍ମଣ |
| ଦରକନାଙ୍କ ଦୃଶ୍ୟ | ବଡ଼ପଣ୍ଡା |
| ସଦା | ମୂଦରଥ |
| ପାରିଷଦ ଦୃଶ୍ୟ | ମୂଦଲି ଓ ବେତୁଆ |

# ଅନ୍ନପୂର୍ଣ୍ଣା ଥିଏଟର କର୍ତ୍ତୃକ

# କଟକ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ

## ସଗର୍ବେ ଅଭିନୀତ

ଶିକ୍ଷା ଓ ପରିଚାଳନା—ଶ୍ରୀ କାର୍ତ୍ତିକକୁମାର ଘୋଷ

ଆବହ ସଙ୍ଗୀତ—ଶ୍ରୀ କାଶୀନାଥ ମଜୁମଦାର

ମଞ୍ଚଶିଳ୍ପୀ – ଶ୍ରୀ ବଙ୍କିମ ସରକାର ଓ ଭ୍ରାତୃବୃନ୍ଦ

ପ୍ରଥମ ଅଭିନୟ ରଜନୀ—୨ । ୯ । ୧୯୪୪

## ପ୍ରଥମ ଅଭିନୟ ରଜନୀର ପାତ୍ରପାତ୍ରୀ ଗଣ

### ଭୂମିକାରେ—ସ୍ତ୍ରୀ

ଉଗ୍ରଚଣ୍ଡୀ, ରଣଚଣ୍ଡୀ, ବ୍ରାହ୍ମଣୀ, ପାର୍ବତୀ···ସୁଧାରାଣୀ
ବନ୍ଧୁପତ୍ନୀ ··· ··· ବାଳାମଣି
ଶୋଭ ସାବିତ୍ରୀ
ଚୁଲ୍ ଜାନକୀ
ନିର୍ମଳ ନିର୍ମଳା
ଲଛମୀ ଲକ୍ଷ୍ମୀ
ମାହାରି ··· ବାସନ୍ତୀ
ଗ୍ରାମ ବାଳିକାଗଣ—ଭାନୁ, ମଣିଅ, ପୁନା, କିରଣ, ବାସନ୍ତୀ

— ——

## ଭୂମିକାରେ—ପୁରୁଷ

ବଡ଼ ମହାନ୍ତି—ଶ୍ରୀ ରାମଚନ୍ଦ୍ର ମାଣିଆ
ଗୋବନ୍ଦ— ଶ୍ରୀ ଗଣେଶ୍ୱର ରଥ
ନାରାୟଣ— ଶ୍ରୀ କାଶୀନାଥ ସାହୁ
ବାଞ୍ଛାରାମ— ଶ୍ରୀ ବୃନ୍ଦାବନ ବେହେରା
ସଦା— ଶ୍ରୀ ବୃନ୍ଦାବନ ପାଣ୍ଡ
ନଟବର— ଶ୍ରୀ ବେଣୁଧର ପଟ୍ଟନାୟକ
ଗୁମାସ୍ତା— ଶ୍ରୀ ମଧୁସୂଦନ ଦତ୍ତ
ପଧାନ— ଶ୍ରୀ ନଟବର ସେନ
ପ୍ରଜାଗଣ— ଶ୍ରୀ ଗୋପୀନାଥ ମହାପାତ୍ର, ଶ୍ରୀ ବ୍ରଜକିଶୋର ମହାନ୍ତି
ଶ୍ରୀ ଚକ୍ରଧର ପାଢ଼ୀ, ଶ୍ରୀ ପ୍ରଭାକର ପଣ୍ଡା, ଶ୍ରୀ ଲଡ୍ଡୁ,
ଶ୍ରୀ କିଶୋର, ଶ୍ରୀ ବନମାଳୀ ପ୍ରଭୃତି
ବରକନ୍ଦାଜ— ଶ୍ରୀ ବସନ୍ତକୁମାର ତ୍ରିପାଠୀ, ଶ୍ରୀ ବୀରବର ସାହୁ
ଭଦ୍ରଲୋକ— ଶ୍ରୀ ଜୟକୃଷ୍ଣ ମହାପାତ୍ର, ଶ୍ରୀ ବସନ୍ତକୁମାର ତ୍ରିପାଠୀ
ରାଜା— ଶ୍ରୀ ମଧୁସୂଦନ ଦତ୍ତ
ଭିକାରୀ, ବ୍ରାହ୍ମଣ, ଶବର, ମହାଦେବ, ଶିବା—ଶ୍ରୀଲକ୍ଷ୍ମୀନାରାୟଣ ପାଣ୍ଡ
ମାଧୋଇ— ଶ୍ରୀ ସତ୍ୟନାରାୟଣ ପାଣ୍ଡ
ଘଣ୍ଟିକଣ୍ଠା— ଶ୍ରୀ ବେଣୁଧର ପଟ୍ଟନାୟକ
ବଡ଼ପଣ୍ଡା— ଶ୍ରୀ ନଟବର ସେନ
ସୁନ୍ଦରରଥ— ଶ୍ରୀ ଗୋପୀନାଥ ମହାପାତ୍ର
ସୁବୁଲି— ଶ୍ରୀ ଚକ୍ରଧର ପାଢ଼ୀ
ପାଇକ— ଶ୍ରୀ ବ୍ରଜକିଶୋର ମହାନ୍ତି, ଶ୍ରୀ ବୀରବର ସାହୁ
ସଭାସଦ୍‌ଗଣ—ଶ୍ରୀ ଜୟକୃଷ୍ଣ ମହାପାତ୍ର, ଶ୍ରୀ ବସନ୍ତକୁମାର ତ୍ରିପାଠୀ
ପୂଜାପଣ୍ଡା— ଶ୍ରୀ ଲିଙ୍ଗରାଜ ନନ୍ଦ
ବୁଢ଼ାସେବକ—ଶ୍ରୀ ବୃନ୍ଦାବନ ବେହେରା
ଅଇଁଠା— ଶ୍ରୀ ବଟକୃଷ୍ଣ ସେନ

## ପ୍ରଥମ ଦୃଶ୍ୟ

[ ବନ୍ଧୁ ମହାନ୍ତିଙ୍କର ଘର ସମ୍ମୁଖ । ଦୂରେ ବଳଦ ଗାଡ଼ି ଚାଲିବାର ଶବ୍ଦ ଓ ବଳଦମାନଙ୍କର ଘଣ୍ଟି ଧ୍ୱନି ଶୁଣାଗଲା । ଗଡ଼ିଆ ଥାଇ ଥାଇ ତା ଲଣ୍ଡରେ କୁହାଟ ଛାଡ଼ୁ ଥାଏ ଓ ବଳଦ ଅଟକେଇବାର ଟାହସ ଫୁଟାଉଥାଏ । କମେ କମେ ତାହା ନିକଟ ହୋଇ ଆସିଲା ]

ହ ହ-ଡ଼-ଡ଼ ହେଏ-ହ-ହ

ଗୀତ

ଅଣ୍ଟାଭଙ୍ଗ ଗଳରେ ଭକ୍‌ତା—ଅଣ୍ଟାଭଙ୍ଗ ଚାଲ
ଦୁଲଲେ ବାଟ, ମୋଡ଼ିବ ବେକ—ହେବୁ ସିନା ହାଲ୍ ।
"ଡ଼ିହୁ ଡ଼ିହୁ—ଟକ୍ ଟକ୍"

[ ଗାଡ଼ି ଅଟକିବାର ଜଣାଗଲା । ତେଣେତ ପ୍ରଜାପାଟକେସହ ବନ୍ଧୁ ମହାନ୍ତି ପ୍ରବେଶ କଲେ ]

ବନ୍ଧୁ—ନା, ନା, ନା, ଖଜଣା ମାଫି ହେବା ଅସମ୍ଭବ । ମୋ ଅମଳରେ ଏ' କଥା ହୋଇ ପାରିବ ନି ।

୧ମ ପ୍ରଜା—ଗୁମାସ୍ତା ସାଅନ୍ତେ, ନିଜେ ସବୁ ମଜ୍ଜା ବୁଲି ଆଖିରେ ଦେଖି ଅଇଲେ ।

ବନ୍ଧୁ—ହିଁ ହିଁ, ଆଖିରେ ଦେଖି ଅଇଲି—ମନ୍ବନ୍ତର, ମଡ଼କ, ଦୁର୍ଭିକ୍ଷ··

୧ମ ପ୍ରଜା—ଘରେ କାହାର ଖଣ୍ଡେ କଂସା ବାସନ ହେଲେ ନାହିଁ, କି ପିନ୍ଧିବାକୁ ଦଉଟେ ଛିଣ୍ଡା ଲେଙ୍ଗଡ଼ା ବି ନାହିଁ ।

ବନ୍ଧୁ—ସେ ସବୁରିକି ବଳି ଅଉ କଣ ଦେଖି ଅଇଲି, ଜାଣ ?

ପ୍ରଜାଗଣ—( ସୋତ୍ସୁକେ ) ଆଜ୍ଞା ?

ବନ୍ଧୁ—ତମମାନଙ୍କର ଭୋଟ୍ ଅମି—ଥମ ଜାତର ନିଜକୁ ଠକାମି-
( ଗୁଲିଯାଉଥିଲେ ଭିତରକୁ )

୨ୟ ପ୍ରଜା—ଆଜ୍ଞା, ଅମେ ତ ଗତର ଖଟେଇ······

ବନ୍ଧୁ—( ବହିଯାଇ ଓ ଫେର ଗୁହିଁ ) ଗତର ଖଟେଇ, ନା ଗତର ଛଡ଼େଇ ?—ବିଲକୁ ବିଲ ପଡ଼ିଅ ପଡ଼ି ରହୁଛି—ବାରକି ବାର ଲଟା ଜଙ୍ଗଲ ମାଡ଼ି ଯାଇଛି—ଗଡ଼ିଅ ପୋଖରୀ ତ ଜହ୍ନିଲା ହେବାର ନା ଗନ୍ଧ ନାଇଁ । ଏ ଫସଲ ହେଲନାହିଁ ବୋଲି ଦୋସରି ଫସଲ କରିବ—ସେଥିକି ଗ୍ଳାଲେଣି ନାହିଁ । କେବଳ ତାସ ପଶା, ନିଶାଭାଙ୍ଗ···କେମିତି ମନ ମଉଜରେ ଦିନ କଟେଇ ଦେଲେ, କାମ—ଅମୁର କାମ ଭିତରେ କଣ ନା, ମହାଜନଙ୍କ ଦେକସଣ୍ଢ଼ା କେମିତି ମୋଡ଼ବ—ତେହିଁକି ଯେତେ ମସୁଦା ଫନ୍ଦଫିକର । ଏବେ ମନ୍ବନ୍ତର ମଡ଼କ ତମକୁ ବାଧିବ ନାଇ ତ, ବାଧିବ କାନ୍ତୁ ବାଡ଼କୁ ?

୨ୟ ପ୍ରଜା—ଆଜ୍ଞା, ଏମିତି ତ ଚଳିଅସୁଛି ସାତ ପୁରୁଷ ହେଲା ।

ବନ୍ଧୁ—ଏମିତ ଚଳି ଅସୁଚି ବୋଲି, ଚିରଦିନ ଚଳୁଥିବ—ସ୍ତ୍ରୀ କେଉଁ ପାଞ୍ଜିରେ ଲେଖା ଅଛି ? ଅହେ ଅବସ୍ଥାକୁ ଗୃହ ବ୍ୟବସ୍ଥା ଖଞ୍ଜିବା ଦରକାର । ବାପ ଅଜା ଅମର ଡାମ୍ଫୁଣ ଅଗରେ ଘିଅ ଖାଉଥିଲେ ବୋଲି ଅମେ ବି ସେଇଅ ଭରବୁ—ଏ କେଉଁ ପ୍ରମାଣ ? ହଁ, ଦେଖ, ମୋ ପଛରେ ଗୋଡ଼େଇ ଲଭ ନାହିଁ । ତୁମର ଗୁହାରି ତୁମେ ସିଧା ସିଧା ଜମିଦାର ଶ୍ରୀ ହଜୁରରେ ଯାଇ ଜଣାଇବ । ବର୍ତ୍ତମାନ ହଜୁର ପିଲ ନୁହନ୍ତି, ଅଉ ଏ ମୋର ବାପ ଦାଦାର ସମ୍ପତ୍ତି ନୁହେଁ ଯେ, ମନ ମୁଖିଅ କାମ ମୁଁ କରି ଦେବି ।

୧ମ ପ୍ରଜା—ସାଅନ୍ତ ଅମର ମା ବାପ—ସାଅନ୍ତ ଯା' କରିବେ—

ବନ୍ଧୁ—ପଧାନେ, ତମର ଏ ଖୁସାମଦିଅ କଥା—ବାହାପିଅ ଡଙ୍ଗ ବୈତରଣୀ ନଈରେ ନେଇ ଭସେଇ ଦିଅ । ଶୁଣ, ତୁମେ ଖଜଣା ମାଫି ମାଗୁଛ, ହେଲେ ସେଥିକି ମୁଁ କିଛି କରି ପାରିବି ନି—ମୋର ଧାରି ମୁଁ ଅଦୌ ବଦଳାଇ ପାରିବି ନି । ବୁଢ଼ା ସା'ନ୍ତେ (ଦୀର୍ଘଶ୍ୱାସ ଛାଡ଼ି) ଦେହଛାଡ଼ି ଗଲା ବେଳେ ମା ଠାକୁରାଣୀଙ୍କୁ ସାକ୍ଷୀ ମାନି, ଜମିଦାରୀ ସିରସ୍ତା, ତାହା ସଙ୍ଗେ ଶିଶୁ ଜମିଦାରଟିକୁ ମୋର ହାତେ ସମର୍ପି ଦେଇ ଯାଇଥିଲେ ।

( ଠାକୁରାଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ )

୩ୟ ପ୍ରଜା—ତେବେ ଅମେ ଅସୁଛୁ ସା'ନ୍ତେ, ଔଳାକ...

ବନ୍ଧୁ—ଔଳାକ । କାହିଁ ଯିବ କୁଆଡ଼େ ? ଛିଅ, ଛିଅ କୋଣ ବାଟେ ଯେ ମୋ ଶଗଡ଼ ପିଛୁ ଧରି, ଏ ନବାଟିଅ ଖରା ତତଲା ଭୂଇଁରେ ଛଟ ପଟ ହୋଇ, ଗୋଡ଼େଇ ଗୋଡ଼େଇ ଅସିଲ, କଣ ଲେଉଟି ଯିବାକୁ ? ଯାଅ ଯାଅ—ବାହାରି ଗଲ

ଏଠୁଁ ?—ତୁମର ମୁହଁ ଗୁହଁଲେ ପାପ । କରେ ଅଇଁଠା, ଗୁହିଁ ଠିଆହୋଇଥା ? ଅରେ ବଳଦ ଫିଟା—ଜମା ଛାଡ଼ି, କୁଣ୍ଡା ତୋରଣି ମୁଠାଏ ଖାଇବାକୁ ଦେ । ପଶୁ ଜାନୁଥିବ ସେମାନେ, ମୁହଁ ଫିଟୁନି ବୋଲି କଣ ସେମାନଙ୍କର ପ୍ରାଣ ନାହିଁ ?

ଅନ୍ୟ ପ୍ରଜା—ଅଜ୍ଞା ମୋର କସୁର ହୋଇଛି ।

ବନ୍ଧୁ—ଦେଖୁଚ ତ ପଧାନେ, ଏ ଟୋକା ଖଣ୍ଡକର ଦମାକ୍—ମୋ ମୁହଁ ଉପରେ ପୁଣି ବଢ଼ି ବଢ଼ି କହୁଚି କେମିତି 'ଅଜ୍ଞା ମୋର କସୁର ହୋଇଛି'—ଅରେ କସୁର କରିଛୁ ତ ତାର ପରିଭବ ମାଇବୁ; କା'ର କ'ଣ ? ( ଗୋବିନ୍ଦ ଠିକ୍ ସେତିକି ବେଳେ ପ୍ରବେଶ କଲା ଓ ଯଥା ସମ୍ମାନ ଜଣାଇ ହାତ ଯୋଡ଼ି ଠିଆ ହେଲା ) କିଏ, ଗୋବିନ୍ଦ ? ହାତ ଯୋଡ଼ି ଠିଆ ହେବ ପଛେ—ଶୁଣ ।

ଗୋବିନ୍ଦ—ଅଜ୍ଞା—

ବନ୍ଧୁ—ପାଖକୁ ଆସ ।

ଗୋବିନ୍ଦ—( ପାଖକୁ ଯାଇ ତୁନି ତୁନି ) ସିରସ୍ତାର ଖବର ତ ? ସବୁ କୁଶଳ ଅଜ୍ଞା ।

ବନ୍ଧୁ—ତା ତ ତୁମର ଗୋଲ୍‌ମାଲ ଚେହେରା ଦେଖି ବେଶ୍ ବୁଝି ପାରୁଛି—ତୁମେମାନେ ଗୋଟିଏ ଗୋଟିଏ ମଜ୍‌କୁର ତହ-ସିଲଦାର ହୋଇନାହିଁ ଯେ, ଇନ୍ଦ୍ର ଚନ୍ଦ୍ର ବରୁଣ ପାଲଟି ଯାଇଛ ଏକାବେଳକେ—ଶୁଣ—

ଗୋବିନ୍ଦ—ଦୁହାଇ ସା'ନ୍ତେ—ସାଆନ୍ତଙ୍କ ହୁକୁମ୍ କବୁଲ୍ କରି ଏ ସନକୁ ଖରଡ଼ାପଣି ବୋଲି ଅଧଲଟାଏ ଜଣ ପିଛାଟାଏ କି ଅଦାୟ କରିନୁ ସା'ନ୍ତେ ।

ବନ୍ଧୁ—ଚୁପ୍ କର ଯା କହୁଛି ଶୁଣ—ଏମାନଙ୍କୁ ସଦର କଚେରୀ ଘରକୁ ନେଇଯାଅ—ଯଥୋଚିତ ବନ୍ଦୋବସ୍ତ କରିଦିଅ—ଏମାନଙ୍କ ହାଲ୍ କେମିତିକା ହୋଇଛି ଦେଖୁଛ ତ ?

ଗୋବିନ୍ଦ—ଆଜ୍ଞା ଏବାବେଳକେ ବେହାଲ—

ବନ୍ଧୁ—ଏଇ ବେହାଲ କରିଛି କିଏ ? ତୁମେ ।

ଗୋବିନ୍ଦ—ଆମେ ।

ବନ୍ଧୁ—ହଁ, ହଁ, ତୁମେ—ଖଜଣା ଆଦାୟ କଲାବେଳକୁ ତ ଖାତାପତ୍ର ଦେଖାଅ କେବଳ, ହେଲେ, ଖଜଣା ଦେଲାଭଳି ଅବସ୍ଥା ଯାଙ୍କର ଅଛିକି ନାହିଁ କେମିତି, ସେଥିକି କି ବ୍ୟବସ୍ଥାଟା କରିଛ ଭଲା ? ଯାଅ ଯାଅ—ଯାହା କହିଲି, ତାହା ଆଗେ, ତା'ପର ଅନ୍ୟ କଥା ।

ଗୋବିନ୍ଦ—ଆସନ୍ତୁ ଆପଣମାନେ—

୧ମ ପ୍ରଜା—ଦେବେ କଣ, ଆମର ଗୁହାରିଟା—

ବନ୍ଧୁ—ଆଃ ! ଗୁହାରି, ଗୁହାରି—ଆଗେ ଯାଅ, ହାଲିଆ ହୋଇଛ ଅଣ୍ଡାରେ ବସ, ଗ୍ରେଷେଇ ବାସ କର, ଖିଆପିଆ ସାର, ଆରାମରେ ଟିକିଏ ଗଡ଼ପଡ଼ ହୁଅ—

ଗୋବିନ୍ଦ—( କାନେ କାନେ ) କଚେରୀ ଘରେ କଚେରୀ କଥା, ଏଠି କଣ ହେ, ଆସ—( ବନ୍ଧୁ ମହାନ୍ତି ବ୍ୟତୀତ ସମସ୍ତଙ୍କ ପ୍ରସ୍ଥାନ ଓ ବୁଲିର ପ୍ରବେଶ )

ବନ୍ଧୁ—ବୁଲି ! ବୁଲି ମୋର ! ( କୋଳ କଲେ )

ବୁଲି—ଓଃ, ତୁମ ପାଖକୁ ଆସିବି ବୋଲି ବାଟ ପାଉ ନ ଥିଲି—ଆଉ ତ ଏମାନେ ଆସିବେ ନି, ବାପା ?

ବନ୍ଧୁ—ଛି, ସେମିତି କହନ୍ତି—ସେମାନେ ପରି ତୋର ପରି ପିଲା ପିଲି ମୋର । (ଚୁମା ଖାଇଲେ) ହଁ, ଚୋଜ୍ ତୋର କାହିଁ ? କଣ କରୁଛି କିରେ ବୁଲି ?

ବୁଲ୍—ସେଥିପାଇଁ ଘରେ ଅଛୁ, ତଅଣ ସବୁଲୁଚୁ—ଡାକ୍ତର ?

ବନ୍ଧୁ—ହଁ, କାମ ଧନ୍ଦାବେଳେ ଡାକନ୍ତି—

ବୁଲ୍—ଯେମିତ ତୁମ କାମଧନ୍ଦାବେଳେ ଅମେ ଡେନ୍ତୁ ଡାକିବୁ ନା କି ପାଖ ପଶିବୁ ନା ବୋଲି ତୁମେ କହୁ ଥାଅ, ଠିକ୍ ସେମିତ ବାପା ?—

ବନ୍ଧୁ—ତୋ ଅପା କାହିଁ ? ଦେଖୁ ନାହିଁ ତ—

ବୁଲ୍—ହଁ, ବାପା । ତୁମେ ଛଅ ସାତଦିନ ଭିତରେ ଫେରି ଆସିବ ବୋଲି କହି, ମାସେ ଏକାଠି ବିତେଇ ଦେଲ—

ବନ୍ଧୁ—ତୁ ଦିନ ଗଣୁଥିଲୁ ପରା ?

ବୁଲ୍—ଏଇ ଦେଖୁନ ଅନାଇ ଘର କାନ୍ଥକୁ—କେମିତ ଚିହ୍ନ କାଟି କାଟି ରଖିଛି ?

ବନ୍ଧୁ—( ଗେଲ କରୁ କରୁ ) କ'ଣ କହିବରେ ମା—ତୋର ବୟସୀ ପିଲାଙ୍କୁ ଯେଉଁ ଚଳୁଛନ୍ତି ଗାଁ ବାଲାଏ । ସେମାନଙ୍କର ଯେଉଁ ଗ୍ଲାନିଅବସ୍ଥା—ତା' ଦେଖି ଗୋଟାଏ ବ୍ୟବସ୍ଥା ନକରିବା ଯାଏ କେମିତ ଫେରିଥାନ୍ତି, କହ ?

ବୁଲ୍—ହଁ, ବାପା । ତୁମେ କୁଆଡ଼େ ଧାନ-ଡଙ୍ଗାବାଲାଙ୍କୁ ମନା କରିଦେଇ ଯାଇଥିଲ, ଅମକୁ ଧାନ ଗୃହଳ ବିକିବେ ନାହିଁ ବୋଲି ?

ବନ୍ଧୁ—କହିଲୁ ମା । ପରକଥା ଅଗ, ନା ନିଜକଥା ଅଗ ?

( ବନ୍ଧୁପତ୍ନୀ ପ୍ରବେଶ କଲେ )

ବନ୍ଧୁ-ପ—ପରକଥା ଭାବିବ ତ ପରକୁ ନେଇ ଘର କରନ୍ତୁ—ଘରକୁ ପୁଣି ଅଇଲ କାହିଁକି ?—ତୁ ଯା ବୁଲ୍, ଦେଖିତ ଅପା ପୋଖରୀକୁ ଯାଇଥିଲା, ପାଣି ନେଇ ଅଇଲା କି ନାହିଁ ?

( ବୁଲି ଯାଇ ନ ଥିବ ) ଯା···ଦେଖୁଛୁ ତ, ଅପା ସାଙ୍ଗେ ତାର ଦଣ୍ଡେ ହେଇ ପଡ଼ିଲା ନାହିଁ ।

ବୁଲି—ସେ ଚମ୍ପୂଟିବ କାହିଁକି ମୋତେ ?

ବନ୍ଧୁ-ପ—ତୁ ଚମ୍ପୂଟାବୋଲି କହୁ କାହିଁକି ତାକୁ ?

ବୁଲି—ହୁଁ···

ବନ୍ଧୁ-ପ—ଅଲୋ ବୁଲି, ବାପା ଆସିଚନ୍ତି, ଏ ଖବର ଦେବୁନାହିଁ ଅପାକୁ ?

ବୁଲି—ମୋ ସାଙ୍ଗେ ଅଗ ଦେଖା, ଏଇ ଖବର ଦେବ ଯାଇଁ ।

ବନ୍ଧୁ-ପ—ଦେଖୁବ ତ··· ( ଚାଲିଗଲା )

ବନ୍ଧୁ—ହଉ, ଚାଲ ।

ବନ୍ଧୁ-ପ—ବୁହ—( ପ୍ରଣାମ କରି ଗୋଡ଼ଧୂଳି ନେଲେ)

ବନ୍ଧୁ—ଘରକୁ ପୁଣି ଅଇଲି କାହିଁକି, ପଳଉଥିଲ ପରା ?

ବନ୍ଧୁ-ପ—ମୁଁ ଯାଏଁ ଲୋ, ଛଅଣ ହାଣ୍ଡି ଟେଣେ ବସେଇ ଦେଇ ଆସିଛି । ଲୋ ବୁଲି—ଶୋଉ—ପାଣି ଗାମୁଛା ଅଣ, ବାପାଙ୍କର ଗୋଡ଼ ହାତ ଧୋଇ ପୋଛୁ ପିଣ୍ଡାରେ ପିଢ଼ା ପକା; ବାପା ବସନ୍ତୁ, ବିଚଣା ନେଇ ବିଞ୍ଚି ଦେ ।

( କହୁ କହୁ ଚାଲିଗଲେ )

ବନ୍ଧୁ—( କିଛି ସମୟ ଅନାଇ ) ମଣିଷ ଘରକୁ ଆସନ୍ତି କାହିଁକି ? ଘର କରିବାକୁ ହେଲେ, ଯେଉଁ ଡାକର୍ ଦରବାର, ତା'ର ଚନ୍ଦ୍ରାଘର ହେଉଛି, ନିଜଘର—ଅଉ ତାର ଚାବିକାଠି ଥାଏ, ଘରଣୀ ହାତରେ ।—ତୁମେ ସେଇ ଚନ୍ଦ୍ରାଘରର ଚାବି ନିଜେ ଖୋଲି ଦେଇ ଗଲ ନାହିଁକି ମୋତେ, ବୁଲିଅବୋଉ ?

( ଶୁଭ ବା ଶୋଉ ପାଣି ତାଳ ଓ ବୁଲି ଗାମୁଛା ଘେନି ପ୍ରବେଶ କଲେ )

ବନ୍ଧୁ—ବେଶ୍ ବେଶ୍ । ବୁଇ ଉଜଣୀ ଯାକ ମିଳ ମିଶି ଯାଉଛ ତ ?—

ବୁଲ୍—ସହଜରେ ଜଣେ ମିଶିଥାନ୍ତି, ଏଇ ଗାମୁଛ ମୋତେ ନଦେଉ-
ଥିଲେ ଅପା ?

( ଶୁଭ ବାପାଙ୍କୁ ପ୍ରଣାମ କରି ଗୋଡ଼ଧୂଳି ନେଲା )

ବୁଲ୍—ବାପା । ମୁଁ ତ ତୁମ ଗୋଡ଼ଧୂଳି ନେଇ ନି ?

ବନ୍ଧୁ—ଅଲେ ଟଭା ମୁଣ୍ଡରେ ତ ଅଣ୍ଡିଏ ଧୂଳି—ଅଉ ଧୂଳି ନେବୁ
କ'ଣ ଲେ ତୁ ?

[ ବୁଲ ପ୍ରଣାମ କଲାବେଳେ ତାକୁ କୋଳକୁ ନେଲେ—
ଶୁଭ ଗୋଡ଼ହାତ ଧୋଇ ଦେବାକୁ ଲାଗିଲା ]

ବନ୍ଧୁ— ଅଲେ ଶୁଭ—ତୁ ଏମିତି ଝଡ଼ି ଶୁଖି ଯାଉଛୁ ଯେ ? ତୋର
ଦେହ ପା କିଛି ହୋଇଥିଲା କି ?

ଶୁଭ—ନାଁ ତ—

ବୁଲ୍—ବାପା । ମୁଁ କହିବ, ଅପା କାହିଁକି ଶୁଖି ଯାଉଚି ?

ଶୁଭ—ତା' କଥା ଶୁଣ ନାହିଁ, ବାପା । ସେଇଟା ଅସଲ୍ ମିଛୁଆ—

ବୁଲ୍—ବାପା ଆଗରେ ମୁଁ କେବେ ମିଛ କହିଚି—କୁହତ ବାପା ?

ବନ୍ଧୁ—କ'ଣରେ, ବୁଲ୍ ?

ବୁଲ୍—ଅପା ଆଜିକାଲି କଖଡେ ଖାଉଛି, ବାପା—

ଶୁଭ—ହଁ ବାପା, ଭୋକ କେମିତିକା—

ବନ୍ଧୁ—ଭୋକ ହେଉନାହିଁ—ତା ହେଲେ ତ ତୋର ଦେହ
ନିଶ୍ଚୟ ବିଗିଡ଼ୁଛି ।

ଶୁଭ—ନାହିଁ ବାପା, ଭଦ୍ରବ ମାସ ଗୋଟାକଯାକ ଓଷା ପଡ଼ିଥିଲା କିନା

ବନ୍ଧୁ—ଭଦ୍ରବ ମାସତ କେଉଁ କାଳରୁ—ଏ'ତ ଆଶିନ ଅଧା ଅଧି ।

ଶୁଭ—ବୋଧେ ଓଷାବ୍ରତ ପାଳି ପାଳି ଦେହଟା କେମିତିକା ମରି
ଯାଉଛି ।

ବନ୍ଧୁ—ଶୁଭ ! କଥା ଲୁଚୁ ନା ମା—

ବୁଲି—ବାଃ ରେ, କଥାତ ତୁମଠେଇଁ—କହିଲ ଭଲ, ବୋଉକୁ ସାତ ଦିନର ଖର୍ଚ୍ଚ ଦେଇ ଯାଇ ଆସିଲ ମାସକ ପରେ, ଧାର କରଜ କରିବାକୁ ତ ତୁମର ମନା—ଅଗା ଲୋମାରେ ଯେତେବେଳେ ଭଣ୍ଡାର ଘର ଶୂନ୍ୟ, ସେ ବିଚରା କରେ କଣ—ଚଳାଏ କିମିତି ?

ଶୁଭ—ବୁଲି ! ତୁ କଣ ଜାଣିନାହୁଁ ? ତୋ ଟୋଲରୁ କ'ଣ କଥା ହୋଇଛି ? ତୋର ଏ ସବୁରେ କଣ ଲୋ ? ଛୋଟ ମୁହଁରେ ବଡ଼ କଥା ।—ବାପା ବୁଲିବାଲି ଏତେ ଦିନକେ ଘରକୁ ଆସିଲେ, ଟିକିଏ ଥୟ ଥାନ୍ ହେବେ କ'ଣ, ତାଙ୍କୁ ଅଥୟ କରି ମାରିବ ଏ ଟୋକୀ । ତତେ କ'ଣ ନ ଜାଣି ମୁଁ ଚିହ୍ନେ—

ବୁଲି—ଦେଖୁଛ ତ ବାପା ! ସତକଥା କହିଲି ବୋଲି, ଅପା କେମିତି ମୋ ଉପରେ ଚଳୁଛ—ଚୁନୁଟିଏ ନ ବୋଲି ପୁଣି ଧମକଉଛ ?

ବନ୍ଧୁ—ମୋର ଦୋଷ ମା, ମୋର ଦୋଷ—ନିଜ ଘରକଥା ଏକାବେଳକେ ପାଶୋରି ପକାଇଥିଲି, ପର ଧନ୍ଦାରେ ମାତି; ଆଜ ସେହି ନିଜ ଘରକୁ ଆସିଛି ଅଇଛିକା, ପରଘର ଚିଆ କରିବାର ଡାକର୍ ନେବାପାଇଁ ।

[ ଠିକ୍ କିଛିବେଳେ ଭିକାରୀଟିଏ ଗୀତ ଗାଇବାର ଶୁଣାଗଲା ]

( ବନ୍ଧୁ-ପତ୍ନୀର ପ୍ରବେଶ )

ବ-ପତ୍ନୀ—ଆସ, ତେଣେ ଭାତ ଶୁଖିଯାଉଛି ।

ବନ୍ଧୁ—ବୁଲିର, ଶୋଭର, ଉମର, ସମସ୍ତଙ୍କ ପାଇଁ ଭାତ ଅଛି ତ ?

ବ-ପତ୍ନୀ—ହଁଗୋ ହଁ, ଅଛି—ତୁମେ ସ୍ନାନଥ ହେବ ନି—

ବନ୍ଧୁ—ବେଶ୍,ଗୁଲ୍—ଆଜ ଏକାଠି ବସି, ସମସ୍ତେ ଖାଇବା—
ତୁମେ ମନା କରନା, ମନା କରନା ।

ବ-ପତ୍ନୀ—ତୁମେ ବାଯ୍ଯା ହେଲ ନା କ'ଣ ? ତୁମେ ନ ଖାଇ ସାରଲେ ମୁଁ କେବେ ଖାଇପାରେ ? ଯା ଶୋଭ—ଯା ଗୁଲ୍—ବାପାଙ୍କୁ ନେଇ ଯା, ଏକା ଥାଳରେ ବାଢ଼ି ଦେଇଛି, ଏକାଠି ବସି ଖାଇବ—

ବନ୍ଧୁ—ତୁମେ ?

ବ-ପତ୍ନୀ—ଅଃ, ଗୁଲ୍, ମୁଁ ତୁଅର ଦଏଁ । ଠିଅ ଠିଅ କାହିଁକି ?—ଗୁଲ୍, ଶୋଭ—ବଳେଇଛା ଢେଣେ ନହର ପହର ହେଉଥିଲା ଚେ—

ଗୁଲ୍—ଆସ, ବାପା—

(ବନ୍ଧୁ-ପତ୍ନୀ ବ୍ୟତୀତ ସମସ୍ତେ ଗୁଲଗଲେ
—ଭବାଣୀ ପ୍ରବେଶ କଲ )

ଭବାଣୀ—ମୋତେ ଅମୃତ ଖୁଆଇଲ, ମା—ଅମୃତ ଖୁଆଇଲ । ପେଟପୂରି କରି କେହୁ ଦନେ ଏମିତ ଦେଇନାହିଁ, ତୁମେ ଯେମିତ ମୋତେ ଦେଲ ଅଜ୍ଞ ।

ବ-ପତ୍ନୀ—( ଭବାଣୀଙ୍କୁ ପ୍ରଣାମ କଲେ )

ଭବାଣୀ—ତୁମର ଅଧିକରୁ ଅଧିକ ହେଉ, ମା—( ଗୁଲଗଲ )

( ବନ୍ଧୁ ଅଇଁଠା ହାତରେ ଧାଇଁ ଅସିଲେ )

ବନ୍ଧୁ—ଏ କ'ଣ କରିଛ ତୁମେ ? ଭାତ ହାଣ୍ଡିଟା ବିଲ୍କୁଲ ଖାଲି ଦେଖିଲି—ତୁମର ଭାତ କାହିଁ ?—ଓ ସେଇ ଭବାଣୀଟିକୁ ନିଜର ଗଣ୍ଡାକ ଅଜାଡ଼ି ଦେଇଚ ପରା—

ବ-ପତ୍ନୀ—ଅତିଥି, ନାରାୟଣ—ଏ କଥା ତୁମେଇ ଶିଖେଇଚ ମୋତେ

ବନ୍ଧୁ—ହେଲେ, ତୁମେ ଖାଇବ କଣ ?

ବ-ପତ୍ନୀ—ତୁମର ପତର ଅଇଁଠା, ମୋର କୈବଲ୍ୟ ପ୍ରଭୁ !

ବନ୍ଧୁ—ଅଗରୁ ସେ କଥା କହୁ ନ ରଖିଲ କାହିଁକ ?

ବ-ପତ୍ନୀ—କୈବଲ୍ୟ ତ ବେଶି ଖାଇବାକୁ ହୁଏନା । ତୁମର ଶଙ୍କୁତୁ-ହାତରେ ଲଗିଛି ଯେଉଁ ଖୁଦ୍‌କଣାଟି—( ସେଇଟିକ ନେଇ ପାଟିରେ ଦେଲେ ଓ ପ୍ରଣାମ କଲେ ।—ଉଭୟେ ସେତେବେଳେ ଖାଇ ଗାଇ ଯାଉଥିଲ, ପରିସ୍ଥିତିର ସମସ୍ୟାକୁ ଉପଲକ୍ଷ୍ୟ କରି ;—

# ଦ୍ୱିତୀୟ ଦୃଶ୍ୟ

[ ପୂର୍ବ ଦୃଶ୍ୟ-ଶେଷର ଉଦ୍‌ବେଳିତ ଭାବୋଚ୍ଛ୍ୱାସ ଲୀନ ହୋଇଗଲା । ଉପସ୍ଥିତ ଦୃଶ୍ୟାରମ୍ଭର ଗୋଟାଏ ବିଳାସ ବ୍ୟସନର କୋଳାହଳ ମଧ୍ୟରେ ଦୃଶ୍ୟ ଦେଖାଗଲା—ନାରାୟଣ ବାବୁଙ୍କର ବୈଠକଖାନା, ସେଠାରେ ଯେଉଁ ବିଳାସ-ବୈଠକ ବସିଛି, ତାହା ପୂର୍ବକାଳର ସ୍ମୃତିରେ ମଣ୍ଡିତ, ଆମୋଦ ପ୍ରମୋଦକାରୀମାନେ ଯେ ଯାହାର ମର୍ଯ୍ୟାଦା ଅନୁସାରେ ଆସନ ଗ୍ରହଣ କରିଛନ୍ତି ]

ସଭାସଦ୍—ହାଃ, ହାଃ, ହାଃ, ହାଃ—
ବାଞ୍ଛାରାମ—ଚୁପ୍, ଚୁପ୍—ବାଈଜୀ ପୁଣି ନାଚବେ ।
ବାଈଜୀ—( ପ୍ରଥମେ ନାଚଲେ, ତା'ପରେ ନାନା ଅଙ୍ଗଭଙ୍ଗି ସହ ଗାଇଲେ )

—ଗୀତ—

ମୁହିଁ ଯଉବନ ସାଥି,
ଅଣେ ନିତି ମଧୁରାତି
ମିଳନ ବାସନା ରୂପ ଉପାସନା
ପରଶେ ମୁଁ ହରେ ଭୀତି ।

ନାରାୟଣ—(ଗୀତାନ୍ତେ) ବାଃ, ବାଃ,—ବାଈ ତ ବାଈ--ବାଞ୍ଛାରାମ
ବାଞ୍ଛା—ରାମ, ରାମଜୀ ।
ନାରାୟଣ—ଅଃ, ବାଈଜୀଙ୍କ ନାମ ?
ବାଈଜୀ—ମୋ' ନାମ ?—ଲଛମୀ ବାଈ ।
ନାରାୟଣ—'ଲଛମୀ ବାଈ'—'ଲଛମୀ ରାଈ'—ଅରେ, ବାଈ ତ ବାଈ ଲଛମୀ ବାଈ ।
ଲଛମୀ—( ସେଲାମ କରୁ କରୁ ) ଅଔର, ବାବୁ ତ ବାବୁ—
ନାରାୟଣ—( ଆପଣାକୁ ଦେଖାଇ ) ନାରାୟଣ ବାବୁ ?
ଲଛମୀ—( ସମର୍ଥନସୂଚକ କଣ୍ଠରେ ) 'ନାରାୟଣ ବାବୁ' ।
ନାରାୟଣ—ଟଙ୍କା—ଟଙ୍କା—ଅସର୍ଫି—ମୋହର,—ବାଞ୍ଛାରାମ !
ବାଞ୍ଛା—ରାମ, ରାମଜୀ !
ନାରାୟଣ—ଅରେ ତୋଡ଼ା କାହିଁ ? ତୋଡ଼ା, ତୋଡ଼ା ?
ବାଞ୍ଛା—ଥୋଡ଼ାଏ ବ ନାହିଁ, ରାମଜୀ—ବିଲ୍‌କୁଲ୍ ଖାଲି । ତେବେ କଚେରୀ ଘରର ଲୁହା ସିନ୍ଦୁକଟା—

ନାରାୟଣ—ଭଙ୍ଗି ?—ସେନା ଆସ ଏହୁଷଣି,—ଖାଲ୍‌କର ଧର ବାଈଜୀଙ୍କ—

ବାଈଜୀ—ଥାଉ ଥାଉ, ( ନତହୋଇ ସେଲାମ କରୁ କରୁ ) ହୁଜୁର୍ ଏହୁପର ଦୟା ରଖି ଥିଲେଇ ହେଲା ।

ବାଞ୍ଛା—'ହଜୁର୍' କ'ଣ ? ମେରେ ସେଇଁଅ କୁହ, ବବଜାନ୍ ।

ନାରାୟଣ—( ଜନ୍ମାଦନାରେ ) ସାବାସ୍‌ରେ ମେରେ ସେଇଁଅ ବାଞ୍ଛାରାମ । ( କୁଣ୍ଢାଇ ପକାଇଲେ )

ବାଞ୍ଛା—ରାମଜୀ ! (ସଭ୍ରମଦର୍ଶକପ୍ରତି ) ଅଃ, ଦେଖିଲି ଦେଖିଲି ଭାଇ ମ—ବସି ରହୁଚ ଅବୁଝ ?

[ ନାରାୟଣ, ବାଞ୍ଛାରାମ ଓ ବାଈଜୀ ବ୍ୟତୀତ ଅନ୍ୟ ସମସ୍ତେ ଅତଷ୍ଟ ହୋଇ ପଳାଇ ଗଲେ ]

ବାଞ୍ଛା—(ବାଈଜୀକୁ ଇଙ୍ଗିତ କଲେ ନାରାୟଣଙ୍କ ପାଖେ ଆସିବସିବାକୁ)

ଲଛମୀ—( ତାହାହିଁ କଲେ )

ନାରାୟଣ—( ଫକୋଟରେ ସ୍ୱଳ୍ପ ଢୁଳି ଯାଉଥିଲେ )

ବାଞ୍ଛା—ରାମ, ରାମ—ଏ କ କଥା ରାମଜୀ ? ଲଛମୀଜୀ ଯେ ରୁଷି ପଳାଇ ଯିବେ ?

ନାରାୟଣ—ନା, ନା—( ବସିଲେ ସ୍ଥିର ହୋଇ )

ବାଞ୍ଛା—ଅବୁଝ ପାଖରୁ ଲଛମୀଜୀ ।—ଅଃ । ଦେଖିଲ, ଯେମିତି ସାକ୍ଷାତ୍ ଲଛମୀ ନାରାୟଣ ବେଠ ।—ଜୟ ରାମ—ସୀତାରାମ ।—ଜୟ ରାମ ସୀତାରାମ ।—(ପଛେଇ ପଛେଇ ଚାଲିଯାଉଥିଲେ, ଭକ୍ତି ଗଦଗଦ ଭାବର ଅଭିନୟ କରୁକରୁ)

ନାରାୟଣ—(ଜଡ଼ିତ କଣ୍ଠରେ) ବାଞ୍ଛାରାମ ।

ବାଞ୍ଛା—ରାମ, ରାମଜୀ ।

ନାରାୟଣ—ତୁମେ ଚାଲିଯାଉଛ କାହିଁକି ?

ବାଞ୍ଛା—ସୁଧା—ସୁଧା ଆଣିବାପାଇଁ, ନାରାୟଣଙ୍କା !—କେତେ କଳ୍ପ ସାଧନାପରେ, ସାକ୍ଷାତ୍ ଲଛମୀ ନାରାୟଣଙ୍କୁ ଭେଟିଛନ୍ତି ଆଜ୍ଞା—

ନାରାୟଣ—(ହସି) ଓ, ତା' ହେଲେ ତୁମେ ଗରୁଡ଼ାବତାର ପକ୍ଷୀରାଜ ?

ବାଞ୍ଛା—ଅନ୍ତତଃ ତାଙ୍କର ଅଗ୍ରଜ, ଏଥିରେ ସନ୍ଦେହ ନାହିଁ—କାରଣ ତା'ର ସାକ୍ଷୀ ପ୍ରମାଣ ରହିଛି—ଏହି 'ନାକ' ।

( ନମସ୍କାର କରି ଚାଲିଗଲେ )

[ ନାରାୟଣ ଓ ଲଛମୀ ଉପବେଶନ କଲେ—ନାରାୟଣ ଲଛମୀ ପ୍ରତି ମୁଗ୍ଧ ଦୃଷ୍ଟିଥାଇ ଡାକଲେ ]

ନାରାୟଣ—ଲଛମୀ—

ଲଛମୀ—ନାରାୟଣଙ୍କ !—

ନାରାୟଣ—ତୁମେ ଭାରି ସୁନ୍ଦରୀ—

ଲଛମୀ—ହଁ ହୁଁ ।

ନାରାୟଣ—ଜଳନ୍ତା ବହ୍ନି ଶିଖା ପରି—

ଲଛମୀ—ଦେଖ, ଡେଇଁ ନ ପଡ଼ ଯେମିତି !—

ନାରାୟଣ—ପୋଡ଼ି ମରିବାକୁ ମନ ଉଚ୍ଛନ୍ନ ହେଉଛି । ( ଆଲିଙ୍ଗନ କରିବାକୁ ଯାଉଥିଲେ, ସେହିସମୟରେ ବନ୍ଧୁ ମହାନ୍ତି ପ୍ରବେଶ କରି ଡାକିଲେ, ବ୍ୟାକୁଳ ହୋଇ )

ବନ୍ଧୁ—ବାପା !—

ନାରାୟଣ—ବନ୍ଧୁ କକା !—(ନିକଟକୁ ଧାଇଁ ଆସିଲେ )

ଲଛମୀ—( କକ୍ଷାନ୍ତରକୁ ଚାଲିଗଲେ )

ନାରାୟଣ—( ନମସ୍କାର କରି ସାରି ) ଆଜ ଫେରିଲ ନା କ'ଣ ?—ଜମିଦାରୀ ହାଲ ଭଲ ତ ? ପ୍ରଜା ପାଠକମାନେ ବେଶ୍ ସୁଖରେ ଅଛନ୍ତି ତ ?

ବନ୍ଧୁ—(ଲୁହ ପୋଛିଲେ )

ନାରାୟଣ—ତୁମେ ଜାଣୁଛ ଜଗା ? ଜମିଦାରୀ ହାଲ୍‌ଚାଲ ତେବେ ଖୁବ୍ ଖରାପ ?—

ଜଗନ୍ନାଥ—ଖୁବ୍ ।—ହେଲେ, ମୋ'ର ଜମିଦାର ସାଆନ୍ତଙ୍କ ଅଙ୍ଗ ଯେଉଁ ହାଲରେ ଦେଖୁଛୁ, ତାଙ୍କୁ ବଳିଯାଉ ନା । ( ଲୁହପୋଛୁ )

ନାରାୟଣ—ତୁମେ ଏଠୁଁ ବାହାରିଗଲ, ଜଗା ।

ଜଗନ୍ନାଥ—ନା, ତଣ୍ଟିଅ ଦେଇ ବାହାର କରି ଦେଲେ ବି ମୁଁ ଏ' ଥାନୁ ପାଦେ ବି ହୁଁ କିବ ନା ।

ନାରାୟଣ—ମୁଁ ବି ସାଙ୍ଗରେ ଯିବି, ଜଗା ।

ଜଗନ୍ନାଥ—ତଥାପି ନୁହେଁ ।

ନାରାୟଣ—ଜଗା ?—

ଜଗନ୍ନାଥ—ମୁଁ ଏତେକାଳ ଜମିଦାରୀ ପଛେ ଗୋଡ଼ାଇଛୁ—ଜମିଦାର ଯେ ଏଣେ ଭାସିଯାଉଛନ୍ତି, ସେ ଖବର ରଖି ନା ।—ଅଜ ତା'ର ନିସ୍ପତ୍ତି କରିବି, ଏଇ ଘରେ—ଏଇଠାରେ ।

[ନେପଥ୍ୟେ ପ୍ରଜାମାନଙ୍କର ଗୋଟାଏ କରୁଣ ଆର୍ତ୍ତନାଦ ଶୁଣାଗଲା

ନାରାୟଣ—ଏମାନେ କିଏ ? ଏତେ ବିକଳ କାହିଁକି ?

ଜଗନ୍ନାଥ—ତୁମର ପ୍ରଜା ପାଟକ ବାବା—ତୁମର ମୁହଁକୁ ଗୃହିଁ, ତୁମକୁଇ ଭରସାକରି, କାତର ଦୃଷ୍ଟିରେ ଠିଆ ହୋଇଛନ୍ତି ।

ନାରାୟଣ—କ'ଣ ଗୃହାନ୍ତି ? ଏମିତକା ଲଙ୍ଗଳା ମୁକୁଳା, ହାଡ଼ଚମ ଲାଗିଯାଇଛୁ—ଅନେଇ ହେଉନାହିଁ—ଓଃ । ନା, ମୁଁ ନିଜେ ଯିବି ଜଗା—ସେମାନଙ୍କର ଗୁହାରି ଶୁଣିବି—

ଜଗନ୍ନାଥ—ଗୁହାରି ଶୁଣିବ ବୋଲିତ ସେମାନଙ୍କୁ ଅଣିଛୁ ଏଠାକୁ ।

ନାରାୟଣ—ତେବେ ଅଉ ଡେରି କାହିଁକି ?—ଅସ—

ଜଗନ୍ନାଥ—ତୁମେ ଯିବ ନା ବାବା । ମୁ ସେମାନଙ୍କୁ ଡାକି ଅଣୁଛୁ ଏଇ-ଠାକୁ । ରଜାର ମର୍ଯ୍ୟାଦା ରଜା ରଖି ଜାଣିବେ—ପ୍ରଜାର

ମର୍ଯ୍ୟାଦା ପ୍ରଜା ରକ୍ଷା କରିବେ—ସେତେବେଳେ ଯାଇ ରାଜା ପ୍ରଜାର ମିଳନ ସମ୍ଭବ ।

ନାରାୟଣ—କିନ୍ତୁ ଏ ଥାନକୁ—

ବନ୍ଧୁ—ଏ ଥାନ ବିଳାସ ବ୍ୟସନରେ ଭରିଯାଇଛି, କଳୁଷିତ ହୋଇଛି—ସେଥିପାଇଁ ଉପଯୁକ୍ତ କ୍ଷେତ୍ର ନୁହେ ବୋଲି ଡରୁଛ ?—ହେଲେ, ଭୟ ନାହିଁ, ବାବା—ରାଜା-ପ୍ରଜାର ପ୍ରୀତି ଗଙ୍ଗାରେ ଅଳ୍ପ ଧାରା ଧୋଇ ପୋଛି ନିର୍ମଳ ପବିତ୍ର ଧାମ ହୋଇ ଯିବ ।

ନାରାୟଣ—ଭଲା—( ମୁଖାବନତ କଲେ )

ବନ୍ଧୁ— ବର୍ତ୍ତମାନ ଏ ଦରବାର କ୍ଷେତ୍ର—ମୁଁ ତୁମର 'ଭଲା' ନୁହେ । ତୁମେ ମୋର 'ମଣିମା'—ମୁଁ ତୁମର ବାଣ୍ଡିବନ୍ଧା କିଙ୍କର । ମଣିମା ! ହୁକୁମ ହେଲେ, ପ୍ରଜାମାନଙ୍କୁ ଶ୍ରୀ ହଜୁରରେ ହାଜର କରାଇବି ।

ନାରାୟଣ—( ଜମିଦାର ସୁଲଭ ମିଜାଜରେ) ଅବିଳମ୍ବେ ।

( ବନ୍ଧୁ ମହାନ୍ତି ସମ୍ମାନ ଦେଖାଇ ଚାଲିଗଲେ )

[ ବାଞ୍ଛାରାମ ସଣଙ୍କ ଭଳିରେ ନାରାୟଣଙ୍କ ନିକଟକୁ ଆସି କହିବାକୁ ଲାଗିଲେ, ଫୁସ୍ ଫୁସ୍ କରି, କାନେ କାନେ ]

ବାଞ୍ଛା—ଏ' କଣ କରୁଛନ୍ତି, ରାମଜୀ ?

ନାରାୟଣ—ବାଞ୍ଛାରାମ ! —ଦେଖତ, ଏହି ପ୍ରଜାମାନେ ମୋର ଭେଡ଼େ ବିପନ୍ନ !

ବାଞ୍ଛା—ଲଛମୀ ଠାକୁରାଣୀ ଯେ ତେଣେ ଚାଲି ଚାଟି ଜନ୍ଥିଲ—

ନାରାୟଣ—ଏ' କ'ଣ କହୁଛ, ବାଞ୍ଛାରାମ !—(ଚାଲି ଯାଉ ଯାଉ ପୁଣି ଫେରି) ନା ନା, ବିପନ୍ନ ପ୍ରଜାମାନଙ୍କର ଦୁଃଖ—

ବାଞ୍ଛା—ମୁଁ ବୁଝୁଛି, ରାମଜୀ !

ନାରାୟଣ—ତୁମେ ? ବାଞ୍ଛାରାମ ?—ପାରିବ ତ ?

ବାଞ୍ଛା—ଭାବରେ ପଡ଼ିଲେ ବଳାଇ ଶିଖନ୍ତି । ଏ ଅଉ ବେଶୀ କ'ଣ ?
ହରିଙ୍କରତ ଦୁଃଖ ମୋଚନ କରିବାକୁ ହେବ ।—ଏକ
ଅଡେ ପ୍ରଜା ପାଞ୍ଚକର-ଅନ୍ୟ ଅଡେ ଲକ୍ଷ୍ମୀ ବାଇ-
ଙ୍କର । ହେଲେ, ଲକ୍ଷ୍ମୀ ଠାକୁରାଣୀଙ୍କ ଦୁଃଖ—

ନାରାୟଣ—ସ୍ୱୟଂ ନାରାୟଣ ଛଡ଼ା କେହି ମୋଚନ କରିପାରିବେ ନା··
( ପ୍ରସ୍ଥାନ )

[ ବାଞ୍ଛାରାମ ଜମିଦାରୀ ଗୃହରେ ତକିଆ ଠେସି ବସିଲେ ଓ
ଅନ୍ୟ ଅଡେ ମୁହଁ ବୁଲାଇ ଅଲବଲ ହୁକାରୁ ତମାଖୁ
ସେବନ କରିବାକୁ ଲାଗିଲେ ]

( ପ୍ରଜାଗଣ ସହ ବନ୍ଧୁ ମହାନ୍ତି ପ୍ରବେଶ କଲେ )

ପ୍ରଜାଗଣ—ହଜୁର, ମହିମା—ଜୁହାର, ମା ବାପ— ( ଲମ୍ବ ଖମ୍ବ
ହୋଇ ସମସ୍ତେ ଗୋଡ଼ ତଳେ ପଡ଼ିଲେ )—ରକ୍ଷା କରନ୍ତୁ,
ରକ୍ଷାକରନ୍ତୁ ।

ବାଞ୍ଛା—ଉଠ, କୁହ, କଣ ଚାହଁ ।

୧ମ ପ୍ରଜା—ଦେଖନ୍ତୁ ଥରେ ଅନେଇ ଆମମାନଙ୍କର ହାଲ ।
ଅକାଳ ପଡ଼ିଛି—ପେଟକୁ ଦାନା ନାହିଁ—ଅଣ୍ଟାକୁ କନା
ନାହିଁ—ପିଲା ଛୁଆଏ ପ୍ରାଣ ଦାଉରେ କଲବଲ—

ବାଞ୍ଛା—ଆଜ୍ଞା, ଆଜ୍ଞା; ମୁଁ ବି ତୁମ କଥାରେ ଭାରି କଲବଲ—

ବନ୍ଧୁ—ଚୁପ୍, ଚୁପ୍—ଦେଖି ପାରୁନ, ସା'ନ୍ତେ ତୁମପାଇଁ ଏତେ
ଭାବିଲେଣି, ତୁମ ଅଡ଼େ ଅନେଇ ବି ପାରୁ ନାହାନ୍ତି ।

ବାଞ୍ଛା—ହଁ, କଅଣ ତୁମେ ଚାହଁ, ସଫା ସଫା କହୁଥାଅ ।

ବନ୍ଧୁ—କୁହ—ଡର ଭୟ କାହିଁକି ?—ସା'ନ୍ତେ ନିଜେ ଅଭୟ
ଦେଉଛନ୍ତି । ସେ ତୁମର ରଜା—ତୁମେ ତାଙ୍କର ପ୍ରଜା—

ବାପ ପୁଅ ସମ୍ପର୍କ ତୁମଭିତରେ—ପୁଅ ବାପ ପାଖେ ଅଳି କରିବନି ତ, କରିବ କା'ପାଖେ ?

୧ମ ପ୍ରଜା—ଗୋଟାଏ ସନର ଖଜଣା ମାଫି—ଏତିକି ଆମ ଗୁହାରି ।

ବାଞ୍ଛା—ଏ' କିବା କଥା ? ଯା ପାଇଁ ଏତେ ? ଛି,ଛି, ବନ୍ଧୁ କିବା ଥାଉଁ ଥାଉଁ, ମୋ ପାଖେ କହିବାକୁ କଥା ?

ବନ୍ଧୁ—ନା ନା, ଏମିତ କଥା କହନ୍ତୁନି, ସା'ନ୍ତେ । ମୋତେ ଆଉ ମହିରେ ପୂରେଇବେ ନି—ଏଣିକି ମୋ'ର ବଳ ବୟସ ଢଳିଲା—ବୁଦ୍ଧିଶୁଦ୍ଧି ହୁଡ଼ିଲା । ପାଗଳ ଅମୃତିଏ କେତେବେଳେ ଠୁକ୍ କିନା ଝଡ଼ିପଡ଼ିବି, ଜାଣି ହୋଇଲ୍ ବି ଜାଣିବେ ନି । ମୁଁ ଜୀଇ ଥାଉଁ ଥାଉଁ, ରଜା ପ୍ରଜା ଭିତରେ ଦେଖାସାକ୍ଷାତ୍ କରେଇ, ମେଣ୍ଟ ବାନ୍ଧି-ଦେଲେ—ମୋର ଛୁଟି ।

ବାଞ୍ଛା—ଏ'କି କଥା, କକା ? ତୁମେ ଏମିତ ଛାଡ଼ ଛାଡ଼ ହେଲେ, ମୁଁ ଛାଡ଼ିବି କହଁ କି ?

ବନ୍ଧୁ—ନା ନା—ତୁମେ ସେପରି ଭୁଲ ନା, ବାପ—ତୁମେ ରାଜ୍ୟଭାର ନେଲେ, ମୁଁ ରଜାଙ୍କ ଖବର ବୁଝିବି, ରାଜ୍ୟଭାରରୁ ରଜାଙ୍କ ଖବର ବଳି ଗଲାଣି ।

ବାଞ୍ଛା—ବେଶ୍, ତୁମର ଯେବେ ଏଇତା ଇଚ୍ଛା, ସେଥିରେ ମୁଁ ବାଧା ଦେବି ନି—କାରଣ, ପିତାର ଇଚ୍ଛା, ପୁତ୍ରର ପୂରଣ କରିବା ଉଚିତ । ତେବେ, କଟେଣି ଘର ଗୁବାଟା ତୁମପାଖେ ଅଛି—

ବନ୍ଧୁ—ରହିବା ଦେନ୍ତୁନେଁ—ଏଇ ନିଅନ୍ତୁ ଗୁବ ।

ବାଞ୍ଛା—ସେଇଟି ରଖ—ହଁ, ଲୁହା ସିନ୍ଧୁକର ଗୁବାଟା— ?

ବନ୍ଧୁ—ସେହି ଗୁବ ଗୋଛାଟର ଅଛି, ସା'ନ୍ତେ—

( ନାରାୟଣ ଠିକ୍ ସେହି ସମୟରେ ପଶି ଆସି କହିଲେ )

ନାରାୟଣ—ମୋର ବୋଉର ଗହଣା ସିନ୍ଦୁକର ଗୁଡ଼ି ?

ବାଞ୍ଛା—( ଉଠି ପଡ଼ି ) ଠିକ୍ କହୁଛ, ବାପଜୀ ।

ବନ୍ଧୁ—ବାଞ୍ଛାରାମ ।—ଓଃ

ନାରାୟଣ—ମୂର୍ଚ୍ଛା ଯିବ ପଛେ—ଆଗେ ଗହଣା ବାକ୍ସର ଗୁଡ଼ି—

ବାଞ୍ଛା—ଘର ପାରିଜାତ ପାଇଁ ରୁକ୍ମଣୀ ଦେବୀ କ ଜଦଳଗଟାଏ ଲଗାଇ ନ ଥିଲେ—ଆଜ ଏ'ତ ସାର ସୁବର୍ଣ୍ଣ ଅଳଙ୍କାର—ଲକ୍ଷ୍ମୀ ଦେବୀ ବାଙ୍କୀ ରଖିବେ ?—ମଥା ପିଟିଦେବେ ନା ନାରାୟଣଙ୍କ ଚରଣ ତଳେ ?

ବନ୍ଧୁ—ବାଞ୍ଛାରାମ—

ନାରାୟଣ—ନାଲି ଆଖି ଦେଖାଇବ ପରେ—ବାଞ୍ଛାରାମ ଯା କହେ ବା କହିବାକୁ ଗୁହେଁ, ତା' ତୁମ ଜମିଦାର ସା'ନ୍ତଙ୍କ ମନର କଥା,—ଏହା ଖିଆଲ ରଖିବ ।

ବନ୍ଧୁ—ଡେବେଁ ଶୁଣ ସା'ନ୍ତେ—ମୁଁ ମରିଗଲେ ବି ଏ ଗୁଡ଼ି କାହାରିକୁ ଦେଇ ପାରିବି ନି; କାରଣ, ତୁମର ବୋଉ ସ୍ୱର୍ଗକୁ ଗଲାବେଳେ, ସେହି ଗହଣା ସିନ୍ଦୁକର ଗୁଡ଼ି ମୋ' ଜିମ୍ମାରେ ଦେଇଯାଇ ଥିଲେ, ଆଉ ମୋ'ର ହାତ ଓଠ ଧରି କହିଥିଲେ, ଘରକୁ ଲକ୍ଷ୍ମୀ ଆସିଲେ, ତାଙ୍କର ଶାଢ଼ି ପଣନ୍ତରେ ଯେମିତି ପର ବାନ୍ଧ ଦିଏ ।

ବାଞ୍ଛା—ବେଶ୍ ତ—ଲକ୍ଷ୍ମୀଜି ଆସିଛନ୍ତି—ବାନ୍ଧିଦିଅ, ସହଳ ସହଳ ।

ବନ୍ଧୁ—ବାଞ୍ଛାରାମ—

ନାରାୟଣ—ବୁଢ଼ା । ଭଲରେ ଭଲରେ ଗହଣା ସିନ୍ଦୁକର ଗୁଡ଼ି ଆଣି ଦିଅ, ନୋହିଲେ—

ବାଞ୍ଛା—ବୁଝି ପାରୁଛ ?

ବନ୍ଧୁ—ଅପମାନ ?

ନାରାୟଣ—ହଁ, ହଁ, ଗଳାଧକ୍କା ଦେଇ, ସାତ ବେଣ୍ଟିଆ କରି, ଘଉଡ଼ାଇ ଦେବ ଏହି ସହରରୁ; ଯାଜପୁର ମୁଲକରୁ ।

ପ୍ରଜାଗଣ—ଏ ଅପମାନ ଆମ୍ଭେମାନେ ସହି ପାରବୁ ନି ।

ବନ୍ଧୁ—ଶାନ୍ତ ହୁଅ ଭାଇମାନେ—ଯେତେ ହେଲେ ସେ ମୁନିବ, ମୁଁ ନଉକର—ଆମ ଭିତରେ ଲଢ଼ିଛି ଟିକିଏ ମନ କଷାକଷି —ତୁମେ ଦେହରେ ପଡ଼ ତା' ଅଗ୍ନି ବଢ଼ାଇ ଦିଅନାହିଁ— ଚାଲିଅସ ଅଭିନ୍ନକା—ମୁନିବ ମୋର ଅସୁସ୍ଥ—

( ସମସ୍ତଙ୍କ ନେଇ ଚାଲିଯିବାର ଉପକ୍ରମ )

ନାରାୟଣ—ତୁମେ ତ ସୁସ୍ଥ ?—ଦେଇଯାଅ ଚାବି ।

ବନ୍ଧୁ—ଚାବି ଏଠି କାହିଁ ?

ନାରାୟଣ—ତୁମ ଘରେ ଅଛି ?—ବେଶ୍—ବାଞ୍ଛାରାମ !—

ବାଞ୍ଛା—ରାମ, ରାମଜୀ ।

ନାରାୟଣ—ସାଙ୍ଗରେ ଯାଅ ତ ।

ବାଞ୍ଛା—ମୁଁ—ମୁଁ—ଦେଖନ୍ତୁ, ରାମଜୀ—ଯେମିତକା ମେଳ ବାନ୍ଧିଛନ୍ତି ପ୍ରଜାଏ—ରାମଜୀଙ୍କୁ ଏକୁଟିଆ ଛାଡ଼ି କେବେ ଯାଇପାରେ ଲଛମନଜୀ ?—

ବନ୍ଧୁ—ମୋତେ ବିଶ୍ୱାସ କର, ବାପ—ମୁଁ ଠକି ପଳାଇ ଯିବି ନି ।

ବାଞ୍ଛା—ଏ ବିଶ୍ୱାସ ଅମର ଅଛି—ଏ ବିଶ୍ୱାସ ଅମର — ( ବନ୍ଧୁ ଚାଲିଯାଉଥିଲେ ) ହଁ, ଦେଖ, ଯେମିତି ବିଳମ୍ବ ନ ହୁଏ । ( ବନ୍ଧୁ ଚାଲିଗଲେ )

ଲଛମୀ—ମୋତେ ଭାରି ଡର ମାଡ଼ୁଛି ।

ବାଆଁ—ଆଉ ଡର ଭୟ ନାହିଁ, ସୀତାଜୀ—ସତଂଶେ ରାବଣ ନିଧନ। ଏଥର ନନ୍ଦକରେ ଅସନ୍ତୁ, ବସନ୍ତୁ, ରାମ-ସୀତାଭପେକ ହେଉ—ଆଜି ମୁଁ ରାମର ସେବାକାରୀ ଲକ୍ଷ୍ମଣ ହୁଏ।

## ତୃତୀୟ ଦୃଶ୍ୟ

[ ପୂର୍ବ ଦୃଶ୍ୟର ପରିଶେଷରେ ଯେଉଁ ଘନ ଘନ ହୁଳହୁଳି ଓ ଶଙ୍ଖଧ୍ୱନି ଶୁଣାଗଲା, ତାହା ଗ୍ରାମର କେତେକ ଟୋକାଟୋକି ବାଳିକାମାନେ ଓଷାଖେଳ ଖେଳୁଥିଲେ। ସେହି ସନ୍ଧ୍ୟାନ୍ତର ବର୍ତ୍ତମାନ ଯେଉଁ ଦୃଶ୍ୟ ଦେଖାଗଲା, ତାହା ହେଉଛି—ଗାଁ ଭିତରେ ବିରଜା ମନ୍ଦିରକୁ ଯିବା ଆସିବାର ଗୋଟାଏ ସଙ୍କୀର୍ଣ୍ଣ ବାଟ। କରପଟର ବଣ ଲଟା ଗହଳି ଭେଦକରି ବିରଜାଦେବୀଙ୍କ ମନ୍ଦିର ଚୂଡ଼ା ଦେଖା-ଯାଉଥାଏ। ପିଲାମାନେ ଗୋଟିଏ ଚଉଡ଼ାପଥ ପିଢ଼ାରେ ଗୁଡ଼ାଏ ଫୁଲ ରଖି, ଦୁଇ ମୁଣ୍ଡରୁ ତାହା ଧରି ଗାଇ ଗାଇ ଆସୁଥିଲେ ]

ପିଲାମାନେ—ଜହ୍ନି ଫୁଲ୍ ଠୋ ଠୋ—କାକୁଡ଼ି ଫୁଲ୍ ଠୋ, ଚୁଟିଆ ମୂଷା କହି ଯାଉଛି—ଗୁଡ଼ିଲ ମୁଟିଏ ଥୋ—

୧ମ ପିଲା—ଅଲୋ, ଦୁଲଦୁଲ ଦଅ ଲୋ—

( ସମସ୍ତେ ସେହିଭଳି କଲାବେଳେ, ଭୁଲି ଗୋଟିଏ ଫୁଲଗୁଞ୍ଛ ଧରି ପ୍ରବେଶ କଲା )

ଭୁଲି—ଏ କି ଖେଳ ଖେଳୁଚ କି ଲୋ ?

୧ମ ପିଲା—ଜାଣିନୁ କି ମ, ଜହ୍ନି ଓଷା ଖେଳ ।

ଭୁଲି—ଏଃ, ଏ ଗୋଟାଏ ଖେଳରେ ଲେଖା—ହୁଁ—ପିଢ଼ାରେ ଗାରେ ଗାରେ ଚିତାମାରି ଦେବ—ଫୁଲ ଗଣ୍ଡାଏ ଥୋଇ-ଦେବ—ଅଜ ଦ ମୁଣ୍ଡରୁ ଦ'ଜଣ ଧରି, ଗାଇବ—'ଜହ୍ନି ଫୁଲ ଠୋ ଠା'

୧ମ ପିଲା—ବେଶ୍ ତ, ତୁ ଗୋଟାଏ ନୂଆ ଖେଳ ବତାଇ ନୁ ?

ଭୁଲି—ବୁଢ଼ୀକୁଣୀ ଓଷା ଖେଳ ଖେଳିବା ।

୧ମ ପିଲା—ଓଃ, ଭାରି ନୂଆ ଖେଳଟାଏ ବତେଇଲୁ ଯେ । ଅମେ ଅଜ ଜାଣୁନା । ଏମିତି ଗୋଟିଏ ପିଢ଼ାରେ ଝୁଣ୍ଟିଫୁଲ ନ ଥୋଇ, ମାଟିର କୁଣ୍ଢେଇଟିଏ ବସେଇବ—ସେ ପିନ୍ଧିବ ଗୁଣା ବଣୁଣୀ, ଖଡ଼ୁ ପାହୁଡ଼, ଅଜ ମୋଟ ଚନ୍ଦ୍ରକଣା ଶାଢ଼ୀ ।

୨ୟ ପିଲା—ହିଁ ମ—ଭାଦ୍ରବ ମାସ—ପାଞ୍ଚପାଲି ପାଞ୍ଚ ରବିବାର ଏ' ଓଷା ହୁଏ । ଭାରି ତ ସେ ଖେଳ, ଅଜ ଅମକୁ ଅସିବ ନା ?

ଭୁଲି—ଅଲୋ, ନା'ଲୋ ନା—ସେ ଖେଳ ନୁହେଁ—ଓଷା କଥା ଅମେ ଖେଳିବା ।

୧ମ ପିଲା—ଓଷା କଥା ?

ଭୁଲି—ହିଁ ଲୋ, ତଅପୋଇ କଥା ।

୨ୟ ପିଲା—ଏ ବୁଢ଼ୀକୁଣୀ ଓଷା ପୂଜିଲାବେଳେ ଯେଉଁ କଥା କୁହା ହୁଏ ତ ?

୧ମ ପିଲା—ତାକୁ କେମିତି ଖେଳିବା ମ ?

ଗୁଲୁ—ମତେ ଅପା ଶିଖେଇଛି—ଏମିତି ମୋପରି ସ୍ରେଷ୍ଠ ଥିଲା ବେଳେ ସେ ଯେମିତି ଖେଳୁଥିଲା । ଆଗେ ତୁମେମାନେ ପାଟିତୁଣ୍ଡ ନକର, ଶୁଣ—ମୁଁ ଠିକେ ଠିକେ କଥାଟି କୁହେଁ ।

୧ମ ପିଲା—ହଉ, କହ ।

ଗୁଲୁ—ସାଧବଟିଏ—ତାର ସାତ ପୁଅ, ସାତ ବୋହୂ, ଆଉ ସୁନାନାକୀ ଝିଅଟିଏ—ତା'ର ନାଁ ତଅପୋଇ । ତଅପୋଇ ସଭିସାନ ବୋଲି,ସମସ୍ତଙ୍କର'ଦୁଲଣୀ'ହୋଇଥାଏ । ଦିନେ ତଅପୋଇ ସୁନା ଗୁଙ୍ଗୁଡ଼ି ଧରି ଖେଳୁଥିଲା ବେଳେ, ବୁଢ଼ୀ ଗୋଟିଏ ବ୍ରାହ୍ମଣୀଟିଏ ଥୁରୁ ଥୁରୁ—ମଥାରେ ନୁଖୁରିବାଳ ଫୁରୁ ଫୁରୁ —କାକୁଣୀ ଝଡ଼ପଡ଼ୁଛି କାହିଁରେ କ'ଣ—ଅଣ୍ଟା ପିଟି ଭାଙ୍ଗି ପଡ଼ୁଛି—ବାଡ଼ି ଖଣ୍ଡେ ଧରି ଟୁକ୍ ଟୁକ୍ ହୋଇ ଆସି କହିଲା—

୨ୟ ପିଲା—କ'ଣ କହିଲା ?

ଗୁଲୁ—'ଅଲୋ ଝିଅ, ତୋ ବାପ ତୋତେ ଏତେ ଗେଲବସର କରେ ଯେ, କହିଲେ ସରିବ ନାହିଁ । ସୁନାର ଗୁଳଟିଏ ମାଗି ଆଣି, ଖେଳ ପାରୁ ନୁ ?'

୩ୟ ପିଲା—ବୁଢ଼ୀ ତ ବେଶ୍ କଥା ଶିଖେଇଲା ?

ଗୁଲୁ—ଶୁଣତ—ବସ ବସ ।—ତଅପୋଇ ଗୋ' ଧରିଲା—ସେଇକ୍ଷଣି ବଣିଆକୁ ଡକରା ହେଲା—ସୁନାବଗୁଳ ଗଢ଼ିବାକୁ ବରାତ ଦିଆଗଲା—ଗଢ଼ା ଅଧା ହୋଇଛି, ତଅପୋଇର ମା ମଲା— ପୁରା ହେଲା ବେଳକୁ ବାପା ବି ମଲା—ଧନ ସମ୍ପତ୍ତି କାହିଁ କେଉଁଆଡ଼େ ଉଡ଼ିଗଲା ।

୩ୟପିଲ—ଅଲେ ମୋ ବୋଉ ଲେ । ଅଉ ଶୁଣିବ ନି ଲେ—ମତେ ଭାରି ଡର ମାଡୁଛି ।

୪ର୍ଥପିଲ—ବୁଢ଼ୀଟା ରାକ୍ଷସୀ ନା କ'ଣ ?

ବୁଲ—ଅଲେ, ନାହିଁ ଲେ—ସେ ହେଉଛନ୍ତି ନିଜେ ମା ମଙ୍ଗଳା—ଖଡୁରକୁଣୀ—

୧ମ ପିଲ—ଏମିତିକା କଣ୍ଟା ଡାହାଣୀଟାଏ ନା ?—

ବୁଲ—( ହସି ) ଅଲେ ଡାହାଣୀ/ରାକ୍ଷସୀ ନୁହେଁ ଲେ—ଅପା ମତେ ବୁଝେଇ କହୁଚି ପରା—ଠାକୁର ଦେବତାମାନେ ଏ' ମର୍ତ୍ତମଣ୍ଡଳକୁ ଆସନ୍ତି ଏଇ ବେଶରେ, ଆମଠୁ ଭୋଗ ଖାଇବା ଲୋଭରେ ।

୩ୟ ପିଲ—ଭୋଗ ଖାଇବା ଲୋଭରେ, ନା ମଣିଷ ଖାଇବା ଲୋଭରେ ?

ବୁଲ—(ହସି) ଅଲେ ନାହିଁ ଲେ ନାହିଁ—ଅପା କହୁଛି—ଆମେ ମଣିଷଜାତି ଏମିତି ଯେ, କଷ୍ଟରେ ନ ପଡ଼ିଲେ, କୃଷ୍ଣ ନାମ କେବେଁ ଭଜିବୁ ନି ।

୧ମ ପିଲ—ଓ୍ୱ, ସେଇଥିପାଇଁ ମା ମଙ୍ଗଳା ଭିଆଣ କରି ତଅପୋଇକୁ ପଡ଼ିଲେ କଷ୍ଟ ଦେଲେ, ତା' ପରେ ସେ ତାଙ୍କୁ ପୂଜିବାରୁ ସୁଖରେ ରଖିଲେ ।

୪ର୍ଥପିଲ—କେମିତି ?

ବୁଲ—ଯେଉଁଠୁ ଗପ ଗୁଡ଼ାଚ, ସେଇଠୁ ଶୁଣିଲେ, ବୁଝିବ—ସବୁ ସମଝି-ବାଡ଼ିତ ଗଲ—ଭାଇମାନେ ବେପାରୀପିଲ, ହଟିବେ କାହିଁକି ? ଦିନେ ଏକାଠି ହୋଇ ବସି ବୁଦ୍ଧି ପାଞ୍ଚିଲେ—ତା'ପରେ ବୋଇତ ଚଢ଼ି ସିଂହଳ ରାଇଜକୁ ବଣିଜ କରି ଗଲେ, ଅଉ ଅଉ ସାତ/ବୋହୂଙ୍କ ଜିମାରେ ତଅପୋଇକୁ

ରଖି ଗଲେ—ଡାକରି କହି ଯେ, ତା'ର ଯେମିତ ଟିକଏ ଅଣହେଲା ନ ହୁଏ ।

୨ୟ ପିଲା—ହଁ, ତା'ପର ମୁଁ ଜାଣେ ମ—ସେଇ ବୁଢ଼ୀ କେମିତ ସାତ ବୋହୂଙ୍କୁ କାନେ କାନେ ଶିଖେଇଲା—

୩ୟ ପିଲା—କ'ଣ ?···

୨ୟ ପିଲା—ଏଇ ନଣନ୍ଦକୁ ଦୋଳରେ ବସାଉଛ, ଖଟରେ ଶୁଅଉଛ, ସାତ ଡୁଣ ଗଣ୍ଡ ବାଢ଼ି ଖୁଆଉଛ—କହୁଲ, ଏତେ ସେବା କରୁଛ ଯା'ର, ସେଇ ନଣନ୍ଦ ବଡ଼ହେଲେ—ତୁମ ଉପରେ ସବାର ହେବ ସିନା !—

୧ମ ପିଲା—ହେଲେ, ବଡ଼ ଛ ବୋହୂଙ୍କ ଭଳି ସାନ ବୋହୂ ନଥିଲା । ବଡ଼ ଛ ବୋହୂ ବେଇମାନି କରି ଯେତେବେଳେ ଝଅପୋଇକୁ ବନସ୍ତରେ ଛେଳି ଜଗିବା କାମରେ ଲଗେଇ ଦେଲେ, ସେତେବେଳେ ସାନ ବୋହୂଟି ପରା, ଏ' ଆଖିର ଲୁହ ସେ ଆଖିରେ ମାରି ରହୁଥାଏ ।

ବୁଲି—ହଁ, ତା'ପର ଶୁଣ—'ଘରମଣି' ବୋଲି ଗୋଟିଏ ଛେଳି ଥାଏ । ସେଇଟି ବୋହୂମାନଙ୍କର ଭାରି ପିଅର । ସେଇ ଛେଳିଟି ଦିନେ ଗୁହାଳକୁ ଅଇଲା ନି । ଝଅପୋଇର ପଡ଼ି ବନ୍ଦହେଲା । ସେ ବିଚରି କରେ କ'ଣ ? ପ୍ରାଣ ବିକଳରେ ଏଣେ ତେଣେ ଖୋଜି ଖୋଜି ବୁଲିଲା । ଛେଳି ନ ମିଳିଲେତ ଘରକୁ ଫେରିବ ନି । ଫେରିଲେତ ଅବସ୍ଥା ସରିଯିବ—ଇମିତ ବେଳେ—

୨ୟ ପିଲା—ମୁଁ ଜାଣେ—ବାଳୁଙ୍ଗିଏଁ ଖୁବୁରୁକୁଣୀ ଓଷା ଦୁକୁଥିଲେ, କାନକୁ ଗଲା । ସେଇଠି ଯାଇ ହାଜର ହେଲା, ତା' ମନ କଥା କହେଇଲା, ଆଉ ଘରମଣିକୁ ପାଇ ଘରକୁ ଫେରିଲା ।

ଗୁଲ—ଖାଲି ସେତିକି ?—ବାର ବରଷ ହେଲା ଯଉଁ ଭାଇମାନଙ୍କ ପତ୍ତା ମିଳୁ ନ ଥିଲା, ସେମାନେ ବୋଉଡ ବୋଇଫେଇକର ଘରକୁ ଫେରିଲେ, ପୂର୍ବ ସଂପତ୍ତିରୁ ଅଧିକ ଭଲେ ।

୩ୟ ପିଲା—ଯଉଁ ଭାଉଜମାନେ ଚଅପୋଇକି ଏତେ ହୀନ ଅବସ୍ଥା କରିଥିଲେ, ସେମାନଙ୍କୁ କିଛି କହିଲେ ନି ଭାଇମାନେ ?

ଗୁଲ—କହିଲେ ନି ?—ସେହି ଚଅପୋଇ ଆଗରେ, ଜଣ ଜଣ କରି ଛଅ ବୋହୂଙ୍କ ନାକ କାଟି, ନାକୋଇ କରି ଅଗ୍ନାଗ୍ନି ବନସ୍ତରେ ନେଇ ଛାଡ଼ି ଦେଲେ ପରା ।

୪ର୍ଥ ପିଲା—ମୋ ବୋଉଲୋ ! ଅଚ୍ଛା, ଅଗ୍ନାଗ୍ନି ବନସ୍ତରେ ବାଘ ଭାଲୁତ ନିଶ୍ଚୟ ଥିବ, ସେମାନଙ୍କୁ ଖାଇ ପକେଇଥିବ ?

ଗୁଲ—ଯା ଅଜ ପଗୁରିବାକୁ ?

୩ୟ—ସାନ ବୋହୂଟି ?

ଗୁଲି—ଭଲ ସେ, ଭଲରେ ରହିଲା ।

ସମସ୍ତେ—ତେବେ ତ ଏ ଭଲଖେଳ ।

୧ମା—ହେଲେ, ଅମେ ଖେଳିବା କେମିତ, ଗୁଲି ?

ଗୁଲି—ସେଇ କଥାତ କହୁଛି, ଅମ ଯେମିତ ଖେଳୁଥିଲା ପିଲାଦନେ । ଅମ ଭିତରେ ଜଣେ ହେବ ଚଅପୋଇ, ବାକି ସାତଜଣ ହେବେ, ସାତବୋହୂ ।

୩ୟା—ଅଜତ କେହି ନାହିଁ—'ଘରମଣି' ହେବ କିଏ ?

[ ଅନେକ ବେଳୁ ନାରାୟଣ ପ୍ରବେଶ କରି ପିଲାମାନଙ୍କ ଅଲକ୍ଷ୍ୟରେ ଥାଇ ସେମାନଙ୍କର କଥାବାର୍ତ୍ତା ଶୁଣୁଥିଲେ ଓ ଅପଣାର ପିଲା ଦିନର କଥା ସ୍ମରଣ କରିବାର ଦେଖା ଯାଉଥିଲେ ]

ନାରାୟଣ—ମୁଁ । 'ଅର୍ଡର ମେ'—'ଅର୍ଡ଼ର ମେ' ( ଛେଳିଭଳି ବୋବାଇଲେ) ଅଃ, ତମେ ସବୁ ପଳାଉଚ କାହିଁକି ? ଖେଳ

( ପିଲାମାନେ ଗୁଲିଗଲେ )

ବୁଲ—( ଗଳାଜାଡ଼ି, ଭଟମଟ ହୋଇ ନାରାୟଣ ଆଡ଼େ ଅନାଇ ଠିଆ ହେଲା )

ନାରାୟଣ—କି, ତମେ ପଳେଇଲ ନି ?

ବୁଲ—ଛେଳିକି ଡରିବି ମୁଁ ?

ନାରାୟଣ—(ମନକୁ ମନ) ଠିକ୍ ଏମିତି କଥା ପଦକ ଦନେ, ଦଣ ବର୍ଷତଳେ, ଏମିତି ଜଣେ ବାଳିକା ମୁହଁରୁ—(ବୁଲ ଆଡ଼େ ଗୃହିଁ) ବାପ୍ ରେ, କି ଗୃହାଣୀ ? ପିକାରି ବାଘୁଣୀ କେ ମା—ଧଳାଏଁ ପକାଏଁ—( ପଳାୟନର ଅଭିନୟ କରିବା)

ବୁଲ—ଠିଆ ହୁଅ—

ନାରାୟଣ—ମତେ ?

ବୁଲ—ହଁ, ତୁମକୁ ।

ନାରାୟଣ—ଛେଳିକି ଚିଳେପଡେଇବ ନି ତ ?

ବୁଲ—ନା ।

ନାରାୟଣ—ଅଭୟ ପାଇଲି, ଅଭ ଭୟ କ'ଣ ? କୁହ ମଙ୍ଗଳା-ଠାକୁରାଣୀ । ମୁଁ ଶୁଣିବାକୁ ପ୍ରସ୍ତୁତ ।

ବୁଲ—ତମେ ଏ ଗାଁ'ର ଜମିଦାର ନା ?

ନାରାୟଣ—ମତେ ଚିହ୍ନ ?

ବୁଲ—ଚିହ୍ନିବ ନି, ଗଲା ଦୋଳପୂନିଅଁରେ, ମୋ ମୁହଁରେ ଅବିର ବୋଳି ଦେଇଥିଲ ପରା ?

ନାରାୟଣ—ତମେ କିଏ ? ମୁଁ ତ ଚିହ୍ନିପାରୁ ନି ?

ବୁଲି—ହେଲେ, ବାପାଙ୍କୁ ଲୁଚେଇ ମୋ ହାତରେ ଅବିର ମୁଠେ ଦେଇ ଯେତେବେଳେ ତୁନି ତୁନି କରି କାନରେ କହୁଥିଲ —ବୁଲି, ଏ ଅବିର ମୁଠାକ ତୋ ଅପା ମୁହଁରେ ବୋଳି ଦବୁ, ଆଉ କହିବୁ—ଏ ନାରଣଭାଇର ଅବିର... ସେତେବେଳେ ତ ଏ ବୁଲିକୁ ବେଶ୍ ଚିହ୍ନିଥିଲ ?

ନାରାୟଣ—ତମେ ସେ ଅବିର ଦେଇଥିଲ ଶୋଭା ମୁହଁରେ ? ତବେ ମୋ ବନ୍ଧୁକାଙ୍କ ବୌ ?—ତମେ—

(ବୁଲିକୁ ଧରିବାକୁ ଧାଇଁଲେ)

ବୁଲି—ଁଅ ହୁଅ, ଜବାବ ଦିଅ । ତମେ ପିଲାଦିନେ ଅପାର ଖେଳ ଭାଙ୍ଗି ଦେଉଥାଅ ବୋଲି ମୋର ଖେଳ ଭାଙ୍ଗି ଦବ, କାହିଁକି ?

ନାରାୟଣ—ସେଇ ପୁରୁଣା ଅଭ୍ୟାସ କଥା ମନେ ପଡ଼ିଗଲା, ବୁଲି—ଆଜି ତମର ଏଇ ଖେଳ ଦେଖି—ବୁଲି—ବୁଲି—

ବୁଲି—ଛୁଅଁନା ମତେ—ଗାଁଅର ଜମିଦାର—ଝିଅଏ ହୋଇ ଅଛି ନାହିଁ ତମର ?

ନାରାୟଣ—ସତେ, ବୁଲି—ମୁଁ ଯାହା କରିଚି, ସେଥିପାଇଁ ତମକୁ ଛୁଇଁବା ମୋର ଆଦୌ ଉଚିତ ନୁହେଁ ।

ବୁଲି—ଏକା ତମର କାହିଁକି, କାହାରି ନୁହେଁ ।

ନାରାୟଣ—କାହାରି ନୁହେଁ ? ( ଅପ୍ରତିଭ ନେତ୍ରରେ ଗୁହୁଁବହୁଲେ ବୁଲିଅଡ଼େ )

ବୁଲି—ଅହେ, ଆଜି ପରା ସପ୍ତମୀପୂଜା ? ମୁଁ ବରଜାଙ୍କ ପୂଜାପାଇଁ ଫୁଲ ନେଇ ବାହାରିଚି—

ନାରାୟଣ—ଓ—ସେଇଥିପାଇଁ ଖୋଜିବାକୁ ମନା କଲ ?

ଜୁଲି—ହେଇ, ଦେଖନ୍ତୁ—  ( ଫୁଲ ଗୁଚ୍ଛ ଦେଖାଇଲା )

ନାରାୟଣ—ତୁମେ, ଏତେ ବଡ଼ଟେ ଝିଅ, ଦାଆଁ ପୂଜା ବାହାରିଚ ?

ଜୁଲି—ମଲା, ମୋର କି ଗରଜ ମ ?—ଅପା ପୂଜିବ ବୋଲି ନେଉଚି ନା ?

ନାରାୟଣ—ଅପା ?

ଜୁଲି—ହୁଁ, ଏଇ ଭୋଗ ଥାଳିଅ ଧରି ଅସୁଥିବ । ନାରଣଭାଇ ! ମୁଁ ଏଠି ଏମିତି ଖେଳରେ ମାତିଥିଲି ବୋଲି ଅପାକୁ ଯେମିତି କହି ନ ଦିଅ । ଦେଉଳରେ ବସି ମାଳ ଗୁନ୍ଥିବ, ଏଥିପାଇଁ କେତେ ବେଳୁ ମୋତେ ପଠେଇ ଦେଇ ଥିଲା । ଏ'କଥା ଜାଣିଲେ ଆଉ ବାକି ରଖିବ ନା । ଦାହୁଯାଇ ଖାଲି ତୁମୂଟି ପରିସ କରି ଦବ । ଯାଏଁ...  ( ପ୍ରସ୍ଥାନ )

ନାରାୟଣ—ଓଃ । ତୁକୁ ଭିତରେ ଏ କି ପରିସ । ନା, ନା ଏ ଗୋଟାଏ ଦୁର୍ବଳତା । କାଣ୍ଟିଗ୍ରାମ ଠିକ୍ କହୁଛି, ପ୍ରେମ କରିବାକୁ ହେଲେ, ସାହସ ଦରକାର । ବିଲ୍ୱମଙ୍ଗଳ ଚିନ୍ତାମଣିସକାଶେ ଶବ ଧରି ନଈ ପାରି ହୋଇଥିଲେ, ସାପ ଲାଙ୍ଗୁଡ଼ ଧରି ପାଚେରି ଡେଇଁଥିଲେ—ମୁଁ ଏଇ ଗହଣା ଲାଗି ଘର ଗୋଟାଏ ବୁଢ଼ା ଗୁମାସ୍ତା, ଗୋଟାଏ ଗୃହଚରକୁ ବରଖାସ୍ତ କରିଚି—କେଣେ ଢଣ ? ଲଛମି, ଲଛମୀ—( ଜଣେ ଅନ୍ଧ ବ୍ରାହ୍ମଣକୁ ଘେନି ବୃଦ୍ଧି ବ୍ରାହ୍ମଣୀଟିଏ ଗାଇ ଗାଇ ପ୍ରବେଶ କଲା )

—ଗୀତ—

ଅଛ ଚେ ଧରମୀ ଦାତା, ଶୁଣିବ ଗୁହାରୀ ?
ଦାଅ ଭିକ, ଦାଅ ମୁଠେ, ଅମେ ବାର-ବୁଅର ।
ଗନ୍ତାଘର କର ଖାଲି ଦେବଟି ଭିଖାରୀ ବୋଲି
ନ ଦେଲେଟି ପିବୁ ଗୁଲି,
ଅମ କରମ ଅଦାର ।

ବ୍ରାହ୍ମଣ—ଅନ୍ଧ ବ୍ରାହ୍ମଣ—ଭିଖ ମିଳୁ ।
ନାରାୟଣ—ଏଇ ଗହଣା ?
ବ୍ରାହ୍ମଣୀ—ଅଙ୍କ ତା' ତା'...
ନାରାୟଣ—ଲୋଭ ତ କମ୍ ନୁହେ ?
ବ୍ରାହ୍ମଣୀ—ଶରଧନ ପିନ୍ଧ ଅସିଛୁ ପଗ ।
ନାରାୟଣ—ଏବେ କପାଳ ପଡ଼ିଲା, କଅଣ କରିବୁ ?
ବ୍ରାହ୍ମଣୀ—ସାଅନ୍ତେ । ଏ ଗେରସ୍ତର ହାତ ଧରଲା ଦିନୁଁ—
ବ୍ରାହ୍ମଣ—କିଲୋ । ତୁ' ତ ଭାରି ବଡ଼ି ବଡ଼ି କଥା କହୁଛୁ ? ମୋର ଅଖିଥିଲା ବେଳେ ତୋର ଗହଣା ନ ଥିଲା ? ଅଜ ଅନ୍ଧ ହେଲି ବୋଲି ସିନା, ଦାତାଙ୍କ ପାଖେ ମୋ ନାଁରେ ଏତେ ଲଗେଇ କହୁଛୁ ? କହଲ ସାଅନ୍ତେ । ଅଖି ଥାଇ କଣ ଲୋକେ ଅନ୍ଧ ଭଳି କାମ କରନ୍ତି ନାହୁଁ ?
ନାରାୟଣ—'ଅଖି ଥାଇ କ'ଣ ଲୋକେ ଅନ୍ଧ ଭଳି'—କିଏ ତୁ ? କେଉଁଠୁ ଅସିଚୁ ? ଯା ଯା ଅଖି ଅଗରୁ ବାହାର—ଏଇ ନେ—ଯାଃ ଅଖିରେ ତ କିଛି ନାହିଁ ?
ବ୍ରାହ୍ମଣୀ—ନ ଥାଉ, ଦୟା ଦରଦ ଅଛୁ ତ ? ଅଜ ନ ହେଲେ ଅଜ ଦନେ ନେବ ସାଅନ୍ତେ । ଗାଅ, ଗାଅ, ସାଅନ୍ତଙ୍କୁ ଗୀତ

ସୁଣା···ଭଲ କର ଉଖ ମୁଟାଏ ପାଇବାକୁ ଯେବେ ଅଣ।—

—ଗୀତ—

ଚପଳ ନୟନ ଡୋଳା, ଖେଳାଇ ଭ୍ରୂ ମଞ୍ଜୁଳା
ହାଣିଲ ଯେ ଶର ବାଳା, ମରମେ ଭେଦିଲା ସେହୁ ।୦।
ଝରଦ ମୋ ତନୁ କଲା କି ଅତନୁ
ଭବନେ ଗୃଲେ ମୁଁ ଚାହିଁ, ସରମ ତ ମୋର ନାହିଁ,
ସଖିରେ ତୋ ରସେ ମାତି—ଅଳସ ଥିଲା ମୋ ଗ୍ରତି
ସହସା କେ ଦେଲା ଚେତ ଦେଲି ମୁଁ ଚକିତେ ଗୃହିଁ;
ଛନକା ପଶିଲା ଷଣେ, ଛନ ଛନ ଦେହ ମନେ
ସଖିରେ, ସଖିରେ, କେହୁ ତ ପାଖରେ ନାହିଁ—
ସପନ କି ଦେଖେ ମୁହିଁ ।

ନାରାୟଣ—ମନଟା ଏମିତ ଦୋହଲୁଛି କାହିଁକି ?—ବାହାର ଯାଅ ଏଠୁଁ···ଜଲଦ, ଅଖି ଅଗରୁ,—ଜଲଦ···

ବ୍ରାହ୍ମଣୀ—ହଜ ଅସୁଚୁ, ସାଅନ୍ତେ । ଭକ ଦବାକୁ ମନ କରଥିଲେ, ଯେମିତ ପାଶୋର ନ ପକାନ୍ତୁ, ମନ ଭିତରେ ସଚେତ ଥାଏ ଯେମିତ ।

ଅଧର ଧରକୁ ବୋଲି, ଅଧୀରେ ଯାଉଛୁ ଭୁଲି
ମସ୍ତିରକା ପଛେ ଧାଇଁ ଧାଇଁ ।
ଧାଇଁବା ହେବ ତୋ ସାର ମାର-ଶର ଏ ବେଖର
ଭକତ୍ଵକ କବେ ତୋର ପାଇଁ ।

( ଗୃଲିଗଲେ )

ନାରାୟଣ—"ମନ ଭିତରେ ସତେତ ଥାଏ ଯେମିତ"—ହାଃ ହାଃ ହାଃ—ତୁମ୍ଭଅଛୁ ଯେ ପାଶୋରିବାକୁ ବସିଛ, ଲଛମୀ ପ୍ରେମରେ ଭୋଳହୋଇ, ଏସ ଘର ଭିକାରିର ଭିକ କଥାଟା ମନରେ ଗଣ୍ଠିଧନ କରି ରଖିବ ?—ଲଛମୀ— (ଯାଉଥିଲେ)

[ ଶୋଭି ତ୍ରେଗ ଥାଳିଅ ନେଇକ ପ୍ରବେଶ କଲ୍ ବାପଘରୁ ଦାଗରୁ । ନାରାୟଣଙ୍କୁ ଅଗୃନକ ଦେଖି, ଓଢ଼ଣା ଟାଣି ଦେଇ, ଗୋଟିଏ ଗଛର ଅନ୍ତରାଳରେ ଠିଆ ହେଲ ]

ନାରାୟଣ— ( ଚାଲିଯାଉଥିଲେ ଏଙ୍କମୁହାଁ, ନଜର କରି ହୁଙ୍କା ନଚଳ୍ପ ଭଲ ।

ଶୋଭି—( ନାରାୟଣ ଖଣ୍ଡେ ଦୂର ଚାଲିଗଲ୍ ପରେ, ବାହାରି ଯାଉଥିଲ ସିଧା ସିଧା )

ନାରାୟଣ— ( ହଠାତ୍ ହୁଙ୍କେର କ ଗୋଟାଏ ତାଡ଼ନାରେ ଫେରି, ଠିଆ ହୋଇ ଗୃହ ) ଶୁଣ ତ ?

ଶୋଭି—( ମୁହଁ ନ ବୁଲାଇ ଠିଆ ହେଲ )

ନାରାୟଣ—ତମେ ଢିଅଁ ପୂଜିବାକୁ ଯାଉଛ ?

ଶୋଭି—( ମୁଣ୍ଡ ହଲାଇଲ )

ନାରାୟଣ—ତମେ କଣ ବଡ଼ କକାଙ୍କ ଝିଅ ?

ଶୋଭି—( ଭାଷା ସ୍ଫୁରିଲ ନାହିଁ )

ନାରାୟଣ—ଶୋଭି ! ମୁଁ ତମର ନାରଣ—

ଶୋଭି – ନାରଣ ଭାଇ !

( ତ୍ରେଗ ଥାଳିଅ ହାତରୁ ଖସି ତଳେ ପଡ଼ିଗଲ )

ନାରାୟଣ—ଶୋଭି !

ଶୋଭି—ନାରଣ ଭାଇ !

ନାରାୟଣ—ଶୋଭ ! ( ପରସ୍ପରକୁ ନିର୍ନିମେଷ ଦୃଷ୍ଟିରେ ଅନାଇ ରହିଲେ । ସେତିକିବେଳେ ଦୂରରୁ ଗୋଟାଏ ମନାଦି ଶବ୍ଦ ଶୁଣାଗଲା ) "ସମସ୍ତେ ଶୁଣ—ଜମିଦାର ଶ୍ରୀ ଶ୍ରୀ ଶ୍ରୀ ନାରାୟଣ ମହାପାତ୍ରଙ୍କ ହୁକୁମରେ ସଦର ଗୁମାସ୍ତା ଶ୍ରୀ ବନ୍ଧୁ ମହାନ୍ତି ଆଜିଠାରୁ କାର୍ଯ୍ୟରୁ ବରଖାସ୍ତ ।"

ନାରାୟଣ—ବନ୍ଦ କର, ବନ୍ଦକର, ମନାଦି—ବନ୍ଧୁଭାଇ ମୋର ବରଖାସ୍ତ ନୁହନ୍ତି··                                  ( ଚାଲିଗଲେ )

ଶୋଭା—ମୁଁ ଚଣ୍ଡାଳୁଣୀ କଣ କଲି, ଠାକୁର ଅମଣିଆ ପଡ଼ିଲେ ମାରା କରି ଦେଲି ? ଓଃ, ନାରଣ ଭାଇଙ୍କ ମଙ୍ଗଳ ମନାସି, ଏହି ପୂଜା ଚୁରବାର ଏହି ସ୍ଥାନରେ ପୂଜା କରିବାକୁ ବାପା ମୋତେ କହିଥିଲେ—ମୁଁ ଠିକ୍ ଭାବରେ ଠିକ୍ କରିପାରେ ବୋଲି ମୋ ଉପରେ ବାପା ଏ ଭାର ଦେଇଥିଲେ । ମା—ମା—

[ ସେହି ବୃଦ୍ଧା ବ୍ରାହ୍ମଣୀ, ଥାଳିଆ ଯେଉଁଠି ହୋଇଥିଲା ସେହି ସ୍ଥାନରେ ଉକ୍ତ ଭୋଗଥାଳିଅଛି ଧରି ଠିଆ ହୋଇଥିବାର ଦେଖାଗଲା ]

ବ୍ରାହ୍ମଣୀ—ମା ! ତମର ଅମଣିଆଁ ତ ମାରୁ ହୋଇ ନା—ମୋର ହାତରେ ଧରାଇ ଦେଇଥିଲ ଅଜାଣତରେ । ଆସ ମା—

( ଉଭୟଙ୍କର ପ୍ରସ୍ଥାନ )

# ଚତୁର୍ଥ ଦୃଶ୍ୟ

[ ପୂର୍ବ ଦୃଶ୍ୟର ପରିଶେଷରେ ଢୋଲ ମହୁରି ଘଣ୍ଟା ଘଣ୍ଟଣର ଯେଉଁ ମିଶ୍ରିତ ବାଦ୍ୟଧ୍ୱନି ଶୁଣାଗଲା, ତାହା କ୍ରମେ ଦୂରେ ମିଳାଇ ଯିବାକୁ ଲାଗିଲା । ଦୃଶ୍ୟ ଦେଖାଗଲା—ଜମିଦାରଙ୍କର କଚେରି ଘର । ସିରସ୍ତା କାମ ଜୋରସୋରରେ ଚାଲିଛି । ଦୁଇଜଣ ଅମଲା ମଧ୍ୟରୁ ଜଣେ ଲେଖା ଲେଖି କାମ ଆଉ ଜଣେ ଖଜଣା ଅସୁଲ କାମରେ ବ୍ୟସ୍ତ । ଗୋଟାଏ ପଟେ, ସଦର ଗୁମାସ୍ତା ଯେଉଁଠାରେ ବସନ୍ତି, ସେଇଠି ଟିକିଏ ଠା ଛାଡ଼ି ଗୋବର୍ଦ୍ଧନ ପୂଜା ଝୋଥଲି ପିଟେଇଛି ଓ ତଳକ ଚିତା ବୋଳୁଛି । ଘରର ଆଉ ଗୋଟିଏ ପଟେ ବାଞ୍ଛାରାମ ଘୋଡ଼ହୋଇ କମ୍ପଜ୍ୱର ପୀଡ଼ିତ ମଲ୍ଲୁର ଅଭିନୟ କରୁଥାଏ ଓ ଅଲକ୍ଷ୍ୟେ ସମସ୍ତଙ୍କର କାର୍ଯ୍ୟକଳାପ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥାଏ ]

ନଟବର—ଦୋକେ ଛନ୍—ଛନ ଏବେ ଗୁର—

ଗୋବର୍ଦ୍ଧନ—( ଚିତା ବୋଳୁ ବୋଳୁ ) ଅରେ ମେନ୍ଦା ମଲୁଟା—

ବାଞ୍ଛା—ହୁଁ ହୁଁ ହୁଁ ।

ଗୋବର୍ଦ୍ଧନ—ଯାଉନାହୁଁ ଅବଉଜ ?—ଅରେ ଜର ଯଦ, ପଦାରେ ଯାଇ ମର—କେଉଁଠା ପ୍ରଜାରେ, ତୁ ?

ବାଞ୍ଛା—ହୁଁ ହୁଁ ହୁଁ ।

ଗୋବନ୍ଦ—ଅରେ ଏଇଟାତ କଥା କହୁ ଥାରୁ ନା—ଆହେ ତୁମେମାନେ ଦେଖୁଚ କ'ଣ ? କାମ କର ।

ନଟବର—ଦୋକେ ଡନ—ଡନ ଏକେ ଗୁର୍—(ଇତ୍ୟାଦ)

ଗୋବନ୍ଦ—କରେ ଯାଉଚୂନା ବାହାର, ଡାକିବ ?—ଅରେ କିଏ ଅଛ ଜଗୁଅଳ ?

ବାଞ୍ଛା—ଯାଉଛୁ, ଯାଉଛୁ—ହଁ ହୁଁ ହୁଁ—(ଗୃଲଗଲ, କିନ୍ତୁ ସମସ୍ତଙ୍କ ଅଲକ୍ଷ୍ୟରେ ଅବସ୍ଥାନ କଲ )

ଗୋବନ୍ଦ—କେମିତକା ଔଷଧ—ବଡ଼ ମହାନ୍ତି ଅମଲ ନୁହେଁ ଯେ, ରୋଗକୁ ତଡ଼ ରୋଗୀକୁ ରଖିବ—ଏ ହେଲ ବାଞ୍ଛାରାମ ଅମଲ—ରୋଗ ସଙ୍ଗେ ସଙ୍ଗେ ରୋଗୀକୁ ତଡ଼ିବା କାଳ । ତୁମେମାନେ ଶୁଣୁଛ କ'ଣ ?

ନଟବର—ଦୋକେ ଡନ, ଡନ ଏକ ଗୁର୍—ଗୁର ଡନ ସାତ, ସାତ ଏକ ଅଠ । ହାଁ—ହେଲ୍ଲ—ଗାଏ, ୮ ଟଙ୍କା ୪ ଅଣା ୧୩ ପଇସା ୨ଗଣ୍ଡା ୨କଡ଼ା । ପଧାନେ—

ଗୋବନ୍ଦ—(ଛାତା ଦେନୁ ଦେନୁ ) ଖବଡ଼ା ପଣି, ସୁଧ, ମାଗୁଣି, ମିଅାଦ, ପାଉତ କଟେଇ ଓଗେର ଡବଡବ ମୁତାବକ ଠିକ୍ ଠିକ୍ ହସାବରେ ଧରଚ ତ ?

ନଟବର—ଅଜ୍ଞା, ଏ' କେତାର ଖଜଣା ତ ମୋଟେ ୩ ଟଙ୍କା ୨ଅଣା ।

ଗୋବନ୍ଦ—ଜମିଦାରଙ୍କର ମୋଟ ପାଉଣାର ବାକିତକ କ'ଣ ଅଜଣା ? ନଟବର । ପାଉତ ଫାଡ଼ିବା ଅଗରୁ ଅଜଅରେ ଭଲ କର ହେକ ପାଇଁଦେଖି ନାଅ, ଯଦ ଅଜ କେଜଁ କେଜଁ ବାବଦ ଅଦାୟ କରବା କଥା ହୁଡ଼ ଯଇଥାଅ—ବୁଢ଼ା ମହାନ୍ତି ଅମଲରେ ରାଜସ୍ୱ ଖଜଣାର ସାଥି ପାଉଣା ଗୃଡ଼ାକ ବୋଡ଼ା ଲଙ୍ଗୁଡ଼ ଭଲ ଛୁଡ଼ ଛୁଡ଼ ବାଲକୁଲ ଲୋପ ପାଇବାକୁ ବସିଥିଲ କନା ।

ପଧାନ—ଅଜ୍ଞା, ବୁଢ଼ା ସା'ନ୍ତେଭ ଗଲ୍ଲ ୪ ସନ ହେଲା ଏ ସବୁ ମାଗି ଦେଉ ଅସୁଥିଲେ ।

ଗୋବନ୍ଦ—ଅହେ, ନଟବର ! ଗ୍ରମଙ୍ଗା ପାଜଣା ବସେଇଛ ତ ?

ନଟବର—ଗ୍ରମଙ୍ଗା ପାଜଣା ?

ଗୋବନ୍ଦ—ଯେତକ୍କା ଖଜଣା ସେତକି ପାଜଣା—ଯାକୁ କହନ୍ତି ଗ୍ରମଙ୍ଗା ପାଜଣା ।

ପଧାନ—ମର୍ଜିଭୁ—ମରଜିବୁ ସାଅନ୍ତେ—

ନଟବର—ପଧାନେ, ଦାକ୍ କର ନା—ଭଲରେ ଭଲରେ, ଦେଇ ପକାଅ । ( କାନେ କାନେ ) ଦେଖ, ମୋର ଝିଅର ବାହାଘର—ଚେଟିକଥା ମନେ ଅଛି ତ ?

ପଧାନ—ସା'ନ୍ତେ— ( ହାଲ୍ଅ ହୋଇ ପଡ଼ୁଥିଲେ )

ଗୋବନ୍ଦ—ଅହା ହା—କହୁଛ କ'ଣ, ପଧାନେ ? ମୋର ଗଡା ବଟଙ୍କୁ ଲାଜୁଛି ଯେ—

ପଧାନ—ସା'ନ୍ତେ । ଅପଣ ଅଜ ମହାନ୍ତି ସା'ନ୍ତଙ୍କ ଗାଦରେ ବସିଚନ୍ତି, ଗାଦର ଅପମାନ କରବେ କି ।

ଗୋବନ୍ଦ—ଅରେ, ଏଇଟା କହୁଚ କ'ଣ ? କମକହାଗ୍ରମ ହେବ ?

ନଟବର—( ପଧାନର କାନେ କାନେ ) ମହାନ୍ତି ଅମଳର 'ଅଡବଡ଼ି ଗଡା କ'ଣ ଅଜ ଅଛି, ପଧାନେ ? ଗ୍ରମଙ୍ଗା ଅମଳର ଏହି ଗ୍ରମାନନ୍ଦୀ ଗଡା ଦେଖି ବୁଝି ପାରୁ ନା…"କି ହେଲାରେ, କହୁତ ନୁହଇ ଭାବଗାରେ"—

ଗୋବନ୍ଦ—ଅହେ ନଟବର !

ନଟ—ଅଜ୍ଞା—

ଗୋବନ୍ଦ—ତୁମେ ଗୋଟିଏ ବଳଦ !

ନଟ—ଅଜ୍ଞା, ଅପଣଙ୍କ ଚଳେଇଲାବାଲା ।

ଗୋବନ୍ଦ—କ'ଣ, କ'ଣ କହୁଲ ?

ନଟ—ତୁଣ୍ଡରୁ ଖସିବା କଥା ଧରିଲେ ଚଳିବ ? କ ହୁକୁମ, ସେଇଥିପାଇଁ ମାଫ କରନ୍ତୁ, ଆଜ୍ଞା ।

ଗୋବନ୍ଦ—ତୁମେ ଗୋଟିଏ ଗଧ ।

ନଟ—ଆଜ୍ଞା, ଆପଣ ତ ମା' ବାପ ।

ଗୋବନ୍ଦ—ଆରେ, ଭଲକର ଶୁଣିଲେ ଦିଅ, ଖିରତ ଆଉ ଓଲଟିବାର ନୁହେଁ । ଦେଖିଛତ କାଲିର ଘଟଣା—ଏହି କଚେରୀଘରେ ମନାଦି ବନ୍ଦ କରିବା ବେଳେ, କେମିତ ଗୁଲଗୁଲ ସାମ ଘଟଣା ଘଟେ ?—ମଠେ ମଝିରେ ଠିଆହୋଇ କଣେ କହୁଥାଏ, 'ମନାଦି ବନ୍ଦକର'—ଆଉଜଣେ କହୁଥାଏ, 'ମନାଦି ଚଳାଅ'—ଜଣେ କହୁଥାଏ, 'ଜମିଦାରର ହୁକୁମ'—ଆଉ ଜଣେ କହୁଥାଏ—

ନଟ—ଆଜ୍ଞା, 'ଜମିଦାରର ଏହି ହୁକୁମ ନାମା' ।

ଗୋବନ୍ଦ—ପୁଣି ଜଣେ କହୁଛ, 'ମୁଁ ତା ରଦ୍ଦ କରି ଦେଇ ପାରେ' —ଅପର ଜଣକ ହସି ହସି କହୁଲା, 'ମାଡ଼ାଲର ଖିଆଲ' ସେ'ଟା ଠିକ୍ ଏ ଥମି, ପ୍ରଥମ ଜଣକ ଗର୍ଜି ଉଠି କହୁଲା, 'ସତ ମୁଁ ପ୍ରକାଶ କରିଦେବି' । ସେଇ ଠୋସରେ ହୁଡବାଦ କରି ଦ୍ୱିତୀୟ ଜଣ ଚିଲ୍ଲେଇ କହୁଛ, 'ସତ ଯା' ଲୋକେ ତା' ଜମିଦାରଙ୍କର ନାଚଘରେ ନିଜ ଅଖିରେ ଦେଖି ଅସିଛନ୍ତି ।'

ନଟ—ତା' ପର, ଚୂପ୍ ଗୁପ୍ ନିଶୁନ, ଆଜ୍ଞା ।

ଗୋବନ୍ଦ—ସେହି ନିଶୁନ ଭାଙ୍ଗି ଦେଇ ଜମିଦାର ଚିତ୍କାର କରି କହି ଉଠିଲେ—ମୋର ବନ୍ଧୁଜଣକ ମୋତେ ବିଶ୍ୱାସ କରନ୍ତୁ—ଉପହାସ କରି ବାଞ୍ଛାରାମ କି ଉତ୍ତର ଦେଲା

ଜାଣ ? 'ବନ୍ଧୁ ବଡ଼ ରାଜାର ବନ୍ଧୁ, ରାଜ୍ୟର ବନ୍ଧୁ ନୁହନ୍ତି' —ଏଇକଥା ବର୍ତ୍ତମାନ ଲୋକେ ବିଶ୍ୱାସ କରୁଛନ୍ତି ।

ନଟ—ଫଳରେ ?

ଗୋବିନ୍ଦ—'ଓଃ' ବୋଲି ଜଣେ ପଳାଇ ଗଲା—ଅପର ଜଣକ, ହୋଃ ହୋଃ କରି, ହସି ଗଡ଼ି ଗଲା ।

ନଟ—ଏଥର ବୁଝୁଛ, ପଧାନେ—ତା'ର ଅର୍ଥ ?

ପଧାନ—ଅମଳ ଯା'ର ହେଉ ସା'ନ୍ତେ—ପ୍ରଜା ଯେନ ରାଜ୍ୟ ।

ଗୋବିନ୍ଦ—କି ଯେନ ରାଜ୍ୟ, ଅଲକ୍ଷୁଣା ଦେଖିବ ନମୁନା ?—( ଠାର ଦେଲେ )

[ମୋଟା ମୋଟା ଠେଙ୍ଗାଧାରୀ ୨ଟା ସଣ୍ଢ଼ ଗୁଣ୍ଡା 'ଜଗୁଆଳି' ପ୍ରବେଶ କରି ଯଥାରୀତି ସମ୍ମାନ ଦେଖାଇ ଠିଆ ହେଲେ, ମୁନିବର ଆଦେଶକୁ ପ୍ରତୀକ୍ଷା କରି ।

ପଧାନ—(ତଟସ୍ଥ ହୋଇଗଲା )

ଗୋବିନ୍ଦ—( ଇଙ୍ଗିତରେ ଚାଲିଯିବାକୁ କହିବାରୁ, ଗୁଣ୍ଡା ଦୁଇଟି ଚାଲିଗଲା) ଦେଖିଲ ତ ରାମଙ୍କ ବ୍ୟବସ୍ଥା ?

ପଧାନ—( ସଭୟେ ) ଠେଙ୍ଗାର ବ୍ୟବସ୍ଥା ? —

ଗୋବିନ୍ଦ—ତାହା ନ ହେଲେ,ତୁମେ ସିଧାହେବ କେମିତି ? ସାଉକାର ତୁମ ରକ୍ତ ଶୋଷିବ କିମିତି ?—ଅହା ହା, ତୁମେମାନେ କରୁଛ କ'ଣ ? ଜଲ୍‌ଦି କାମ ସାର—ଆଜି ପର୍ବ, ବଡ଼ ପୂଜା —ମହାଷ୍ଟମୀ—ତୁମେମାନେ ଯାଅ—ଆଜି ଛୁଟି—

(ସମସ୍ତେ ଚାଲିଗଲେ )

ସଦା, ସଦା । ଅଃ ଏଣେ ମୋର ଛଡା ବିଗିଡ଼ି ଗଲାରେ—

( ସଦାନନ୍ଦ ପ୍ରବେଶ କଲା । ବୟସ ତାର ୨୦।୨୫ ହେବ ।

ହେଲେ, ଦଶବର୍ଷର ପିଲାଟିପରି କପାଳରେ, ଗାଲରେ ଟୁପା ଟୁପା ଚୂଆ ଚନ୍ଦନ ଓ ଆଖିରେ କଜଳ କଳା ଲଗେଇ ଥାଏ ]

ସଦା—ଡାକୁଛ, ମାମୁ ?

ଗୋବନ୍ଦ—( ଚିଲକ ଚଟା ସାରି ) ହଁ—( ସଦାନନ୍ଦର ମୁଁହଅଡ଼କୁ ଚାହିଁଲି) କି ରେ, ଏ' କି ବେଶ ତୋର ?

ସଦା—ମାଇଁ (ପୋଛୁ ପକାଇ ମୁହଁକୁ ବାନ୍ଦର କରିଦେଲେ )

ଗୋବନ୍ଦ—ଆଜି ଟିକିଏ ପିଲା ହ'ମ—

( ନିର୍ମଳା ପ୍ରବେଶ କଲ, ବୟସ ତାର ୧୪।୧୫ ହେବ, ଦେଖିବାକୁ ଭାରି ସୁନ୍ଦରୀ )

ନିର୍ମଳା—ପିଲା ନୁହେଁ ତ କ'ଣ ବୁଢ଼ା ?

ଗୋବନ୍ଦ—ବ ୨୫ ର୍ଷ ଉମର ହେଲା ଅସି—

ନିର୍ମଳା—ତୁମ ପାଖେ ସେନା ବ୨୫ର୍ଷ, ମୋ ପାଖରେ ତ ବର୍ଷ— ଏ'କଣ କଲୁ, ସଦା—ମୁହଁଟା ବାନ୍ଦରିଆ କରିଦେଲୁ ତ ? ମୋ'ଘ ଏତେ ମେହନତ,—ଦେଖୁଚ, ଦେଖୁଚ ପୁଅର ଗୁଣ—ଦେବି ସେ ଗାଲ ଫଟେଇ—

ସଦା—ମାମୁଁ !

ନିର୍ମଳା—ମାମୁ ? ଯା—ଯା—ଜଲଦି ମୁହ ଧୋ—ଚୂଆ ଚନ୍ଦନ ଗୋଳ—ଦୀପ ଜାଳ—ସିଜ୍ ପଢର ଅଣି,କଜଳ ପାର—

ସଦା—ମାଇଁ ! ସବୁ କରିବି, ହେଲେ ସେଇ କଜଳ ଅଉ ପାରିବି ନି ।

ନିର୍ମଳା—କ'ଣ, କଜଳ ପାରିବୁ ନି ?

ସଦା—ତୁ ଯଉଁ ଗେଞ୍ଜି କରି ଲଗେଇ ଦେଇଚୁ, ଅଖି ଏଯାଏଁ ପୋଡ଼ୁଛି—

ନିର୍ମଳା—ପୋଡୁଛି କ'ଣରେ ? ଅଖି ଏଥର ଫୋଡ଼ିଦେବି—ଫୋଡ଼ି-ଦେବି—ଯା—

ସଦା—( ସଭୟେ ଘୁଞ୍ଚି ଯାଉଥିଲା )

ନିର୍ମଳ—( ସସ୍ନେହେ ) ଅରେ ସଦେଇ, ଶୁଣ ଟିକେ, ଶୁଣ୍-ଏଥର
ଥିରେ କହ ଲଗେଇ ଦେବା—ତୁ ଅଫିଟ ହେବୁ ନା ତ ?

ସଦା— ( ପିଲା ଢଙ୍ଗରେ ) ନା ମାଇଁ—

ନିର୍ମଳ—ହଉ ଯା'—କିରେ ତୋ ମଞ୍ଜୁ ଅପା କ'ଣ କଲା ? ଦେଖିଲୁ,
ଏବେ କେଉଁ ମଞ୍ଜୁ ଅପା ପାନ ବାଟି ହାତଟା ପକେଇଥିଲି—

ସଦା—ମୁଁ କ'ଣ କହିବି ? ଭୂତ ମତେ ଧରି ପକେଇଲା—ଘୁଣ୍ଡିଗଲା···

ନିର୍ମଳ—ମୁହଁ ଉପରେ ପୁଣି ଜବାବ—ଦେବି ଯେ ଥୋମଣି
ଭାଙ୍ଗି—ଯାଆ, ବାହାର ଏଠୁଁ ( ସଦାନନ୍ଦର ପ୍ରସ୍ଥାନ )

ଗୋବନ—ତୁମେ ହାତ ପକେଇଲ ?

ନିର୍ମଳ—ସେଥିପାଇଁ ତ ଆଣି ପାରିଲି ନା ପଣା ଗିଲାସଟା—ତୁମେ
ନିଜେ ଯାଇ—ଅନେଇ, ସଦା—ଅଚ୍ଛା, ସନ୍ଧପୂଜା ତ ଆଜି
ହେଉନାହିଁ ।

ଗୋବନ—ହେଉ, ହେଉ—ସନ୍ଧପୂଜା ସରଯାଉ ଖାଇବି—ହଁ
ଦେଖିଲ, ଆମ ଗ୍ରାମର ଏ ଘଣ୍ଟ ସନ୍ଧବେଳେ, ମୋ'ର
ଚାକଟା କେମିତିକା ହୋଇଚି ?

ନିର୍ମଳ—ଏ' କି ଚିନ୍ତା ?

ଗୋବନ—ଶ୍ୟାମାନନ୍ଦୀ ।

ନିର୍ମଳ—ଶ୍ୟାମାନନ୍ଦୀ ?

ଗୋବନ—ଯୁଗର ଧର୍ମ ।

ନିର୍ମଳ—ମାନେ ?

ଗୋବନ—ବନ୍ଧୁ ମହାନ୍ତିଙ୍କ ଯୁଗ ଶେଷ—ବାଞ୍ଛାରାମଙ୍କ ଯୁଗ
ପ୍ରବେଶ ।

ନିର୍ମଳ—ଅଚ୍ଛା ବନ୍ଧ—ଛି, ଛି,—ଚନ୍ଦ୍ର ଭାଇଙ୍କ ପାଖେ ପାଖେ ଥାଇ ତାଙ୍କର ଏତେ ବିଶ୍ୱାସୀ ହୋଇ, ଚିଠା ଜଥା ସ୍ୱଭାବ ଧରିଲ ଶେଷକୁ ? ତୁମର ଏ ବଦ୍‌ନାମ୍‌ଯୁକ୍ତ କାମ, ଭଲ ହୋଉଛି ତ ?

ଗୋବନ୍ଦ—( ହସି ) ତୁମେ ଯଦି ତୁମର ନାମୃତ ବଦଳାଇ ପାର, ମୁଁ ନ ପାରିବ କାହିଁକି ? ଯଥା—ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା ।

ନିର୍ମଳ—ତୁମେ କହୁଛ କ'ଣ ?—ମୁଁ ନାମୃତ ବଦଳେଇଛି ।

ଗୋବନ୍ଦ—ନାହିଁ ?—ଏହି ଭଣଜା ସଦାପାଇଁ କନ୍ୟା ଦେଖିବାକୁ ଯାଇ, ତୁମକୁ ବାହା କରି, ତାର ମାଇଁ ସଜାଇ ଘେନି ଅଇଲ, ଏଥିରେ—

ନିର୍ମଳ—ଏଥିରେ ମୋର ନାମୃତ ବଦଳିଲା କେଉଁଠି ?

ଗୋବନ୍ଦ—ନିର୍ମଳ । ହାତ ଗଣ୍ଠି ବଦଳିଲେ ମଧ୍ୟ, ତୁମେ ନାମୃତ ବଦଳାଇନାହିଁ, ବଦଳାଇବାକୁ ଆଗ୍ରହ ପର୍ଯ୍ୟନ୍ତ ଦେଉନାହିଁ; ସେହି ପ୍ରେରଣାରୁ ମୁଁ ଏହି କଥା ବଦଳାଇଲେ ସୁଦ୍ଧା, ନାମୃତ ଯେ ବଜାୟ ରଖି ପାରିବ, ତା' ମୁଁ ଜାଣେ । ତୁମେ ମୋର ସହଧର୍ମିଣୀ ନୁହଁ, ଧର୍ମଗୁରୁ ।

ନିର୍ମଳ—ଛି, ଛି, ବାୟା ବାତୁଳ ପରି କଣ ଗୁଡ଼ାଏ କହୁଛ ?

( ସଦାନନ୍ଦର ବେଗେ ପ୍ରବେଶ )

ସଦା—ମାଇଁ, ଅ' ମ—ମୋତେ ସଜ କେଶ କରିଦବୁ, ଦେଉଳକୁ ଯିବା ପରା ?—ସନ୍ଧ ପୂଜା ହବ, ବେଳ କଣ ମାଲୁମ୍ ପଡ଼ୁନାହିଁ ?

ନିର୍ମଳ—ମୁଁ ଯାଏଁ —

ଗୋବନ୍ଦ—ଟିକିଏ ଠିଆ ହୁଅ । ଅରେ ସଦା, ଏଣିକି ତୁ ତୋର ମାଇଁଙ୍କୁ, ମା ବୋଲି ଡାକିବୁ ।

ସଦା—ମୁଁ କେତେଥର ସେହି କଥା କହେ ମାଙ୍କି—ମାଙ୍କି ପଣ୍ଡ —କି, ମା, ଏଥର ?—ଅରେ ରେ, ଠାକୁର ଠେଇଁ ବଲି ପଡ଼ିବ—ଜାହୁଁ ବୋଦାଟାଇ ଦେଇଗଲା ନି ଶାମା ଧୋବା ଏ ଯାଏଁ ?—ମୁଁ ଯାଏଁ—ମୁଁ ଯାଏଁ—ଦେଖେଁ—( ଯାଇ ଯାଇ ଫେରଅସି ) ମଲି, ମଲି, ମାକୁତ ମୁଣ୍ଡିଅ ମାରି ନି—( ପ୍ରଣାମ କଲା ) ମା—

ନିର୍ମଳ—ଅରେ ରେ, କହୁଛୁ କ'ଣ ?

ନୋହେନ—ନୂଆ ଲୁଗା ପିନ୍ଧିଲେ ପିଲାଏ ମା'ଙ୍କୁ ମୁଣ୍ଡିଅ ମାରଥାନ୍ତି —ଏ' ପରି ଛାର ନୂଆ 'ମା' ଡାକ—

ସଦା—( ଗୁଳ ଯାଉଥିଲା )

ନିର୍ମଳ—କରେ ସଦେଇ, ସେଠି—( ଗୋବନ୍ଦର ପଦଦେଶ ଦେଖାଇ ଦେଲେ )

ସଦା—ବାପା—( ଗୋବନ୍ଦକୁ ପ୍ରଣାମ କରି ଗୁଲିଗଲା )

ନିର୍ମଳ—ମୁଁ ଯାଏଁ—

ଗୋବନ୍ଦ—ଅଛ ଟିକିଏ ନିର୍ମଳ—ଏଇ ସଦାଟା, ଘର ବଗୁଲିଅ ଥିଲା ବୋଲି, ତାକୁ ଛଡ଼ି ଦେବାକୁ ବସିଥିଲି—ତୁମେ ଅସିବା ପରେ, ବଗୁଲିଅ ବୋଲି ଘରୁ ଧନେ ଉଡ଼ି ଦେଇଥିଲି; ତୁମେଇ ତାକୁ ଡାକ ଅଣି, ଅଳ୍ପ ମଣିଷ କରି ଟିଅ କରିଚ । କୁହତ...

ନିର୍ମଳ—ହଜ,ମୁଁ ଯାଏଁ—

ଗୋବନ୍ଦ—( ବାଟ ଓଗାଳ ) ସିବା ଅଗରୁ ଥରେ ଦେଖିଯାଅ, ନିର୍ମଳ—ତୁମର ସ୍ୱାମୀପ୍ରତି ତୁମେ ଅଜ ଯେଉଁପରି କାଯ୍ୟତ ରଖିଚ, ମୋର ଏକାଧାରରେ ବନ୍ଧୁ ଓ ଅନ୍ନଦାତାଙ୍କ ପ୍ରତି, ଠିକ୍ ସେହିପରି କାଯ୍ୟତ ବଜାୟ ରଖିଚ କି ନା ?

( ଗୋଟିଏ ଆସନରେ ଥୁଆ ହୋଇଥିବା ପତ୍ର ପୁଷ୍ପ ମଣ୍ଡିତ ଲେଖନୀପ୍ରତି ଦୃଷ୍ଟି ଆକର୍ଷଣ କରି ) ଏଇ, ସେହି ମହାଜନ ବନ୍ଧୁ ମହାନ୍ତିଙ୍କର ବସିବା ସ୍ଥାନ—ତାଙ୍କର ଆସନ—ତାଙ୍କର ଲେଖନ—ତାଙ୍କର ଗଠା ତାଳପତ୍ର । ଏ ଗୁଡ଼ିକ ମୁଁ ପୂଜା କରିବି ବୋଲି, ସେଇଠିବେ ସଜାଇ ରଖିଛି । ଯାହା କିଛି ଅନ୍ୟାୟ ତ୍ରୁଟି ଏ'ଯାଏଁ କରି ଆସିଛୁ, ତାହା ମହାଷ୍ଟମୀରେ ମହାବଳି ଦେବି । ଆଜି ତାଙ୍କର ଶିକ୍ଷା, ତାଙ୍କର କୃଷ୍ଟି, ତାଙ୍କର ଆଦର୍ଶ ସାର୍ଥକ କରିବି । ଏଇ ଗଡ଼ର ଅନ୍ତରାଳରେ ଥାଇ, ପ୍ରଜା ପୀଡ଼ନର ଅଭିନୟ କରି, ଜଗାଇବି ଉଭୟ ରଜା ଓ ପ୍ରଜାଙ୍କୁ—ଆଜି ଦୁହିଁଙ୍କ ମିଳନ ପଥରେ ଯିଏ କଣ୍ଟକ, ତା'ର କରିବି ମୂଳୋତ୍ପାଟନ । ( ସନ୍ଧପୂଜା ଘଣ୍ଟା ବାଜିବାର ଶୁଣାଗଲା )

( ସଦାନନ୍ଦର ପ୍ରବେଶ )

ସଦା—ମା, ବୋଦା ଆଣିଚି—ଅ' ବେଗେ—ସନ୍ଧପୂଜା ଘଣ୍ଟି ବାଜିଲାଣି—

ନିର୍ମଳ—ସନ୍ଧପୂଜା ଆଜି ମୁଁ ଏଠି କରିବି ରେ—ବୋଦାଟା ଫେରାଇ ଦେ । ମୋର ସ୍ୱାମୀର ନିଷ୍ଠୁର ବଳୀୟ ରକ୍ତ, କରିଥିଲି ମାଙ୍କ ଠେଇଁ ପଶୁବଳିର ମନାସ; କିନ୍ତୁ ଯେଉଁ ମହାପୁରୁଷଙ୍କ ଏହି ଲେଖନ ଏଠାରେ ଶୋଭା ପାଉଛି, ସେହି ମହାତ୍ମା ଆଜି ଚେତାଇ ଦେଉଛନ୍ତି—ପଶୁବଧରେ ବଳି ହୁଏ ନାହିଁ—ବଳି ହୁଏ ପଶୁତ୍ୱ ବଧରେ—(ସମସ୍ତେ ଭୂଇଁରେ ମଥା ଲଗାଇ ପ୍ରଣାମ କରିବାକୁ ଯାଉଥିଲେ, ଏହି ସମୟରେ ବାଞ୍ଛାରାମ ଗୁପ୍ତ ସ୍ଥାନରୁ, ଗୁପ୍ତ ବେଶ ତ୍ୟାଗ ପୂର୍ବକ ଆସି, ଗୋଟାଏ ଭୋଜଡ଼ା ନିଦେଖାଇ କହିଲା )

ବାଞ୍ଛା—ସାମାନ୍ୟ ଅପେକ୍ଷା—ସେହି ପୁଜା ଗାଧରେ,' ଲେଖନ୍ତି ପାଖେ ମୋର ଏହି କୋରଡ଼ାଟା ସ୍ଥାନ ପାଉ—ହାଃ, ହାଃ, ହାଃ,—

( ନିର୍ମଳ କୋରଡ଼ାଟା ଦୂରେ ଫିଙ୍ଗିଦେଲା )

## ପଞ୍ଚମ ଦୃଶ୍ୟ

[ ଦୃଶ୍ୟର ପରିଶେଷରେ ବାଞ୍ଛାରାମ ଯେଉଁପରି ଅଟ୍ଟହାସ୍ୟ କରି ଉଠିଲେ, ଠିକ୍ ସେହିପରି ଅଟ୍ଟହାସ୍ୟରେ ଦିନେ ସେ ନାରାୟଣଙ୍କୁ ଉନ୍ମାଦ କରି ଦେଇଥିଲେ । ବର୍ତ୍ତମାନ ନାରାୟଣ ସେହିଭଳି ଉନ୍ମାଦ ପ୍ରାୟ ପ୍ରବେଶ କଲେ । ଦୃଶ୍ୟ ଦେଖାଗଲା—ସେହି ପୂର୍ବ ଗ୍ରାମ୍ୟ-ପଥ ]

ନାରାୟଣ—ବଦ୍ ନାମ—ବଦ୍ ନାମ—ଗୁରୁଅଡ଼େ ବଦ୍‌ନାମ—ମୁଁ ମାତାଲ—ମୁଁ ଲମ୍ପଟ—ମୁଁ ଦଗାଦାର । ବାଞ୍ଛାରାମ—ବାଞ୍ଛାରାମ—ମୋର ସର୍ବସ୍ୱ ନେଇ, ଯଦି ବଦ୍‌ନାମରୁ ମୋତେ ଛାଡ଼ି ଦେଇ ପାରନ୍ତୁ । ଓଃ । ଏଥିରେ ଯେ ପୁଣ୍ୟପୀଠ ଯାଜପୁର ମୁଖାମର ବଦ୍‌ନାମ—ପୁଣ୍ୟଶ୍ଳୋକ ମହାପାତ୍ର ବଂଶର ବଦ୍‌ନାମ ।—ମୁଁ ବାହାରିଛି, ବନ୍ଧୁ-ବାନ୍ଧବଙ୍କ ପାଖକୁ—କୋଉଠି ଏଇ ଦୁର୍ନାମ ଚକ୍ଷଣୀ ପେଶିବ

ହେବ, ହେଲେ, ମୋ'ର ସୁନାମ, ଯା'ଙ୍କୁ ସେ ଶୁନାଇ
ଅଧିକ ମଣୋନ୍ତ୍ର, ତା' ତାହିଁ ଯେ ତାଙ୍କୁ ଦେବ ?

(ପୁରୁଷ ଛଦ୍ମବେଶୀ ଭଦ୍ରାସା ଭିକାରୁଣୀ ପ୍ରବେଶକଲେ)

ଭିକାରୁଣୀ—ତୁମେ ସୁନାମ ଚାହଁ ?

ନାରାୟଣ—କିଏ ତୁମେ ?

ଭିକାରୁଣୀ—ହଁ, ଚିହ୍ନିବ କାହିଁକି ?

ନାରାୟଣ—ଓଃ, ତୁମେ ସେହି ଭିକାରୁଣୀ ?

ଭିକାରୁଣୀ—ଭିକ ଦେବବୋଲି କହିଥିଲ, ମନେ ଅଛି ତ ?

ନାରାୟଣ—ସତେ ତ—( ଅଣ୍ଟାଳିଲେ ନିଜ ଅଣ୍ଟା ପ୍ରଭୃତି )

ଭିକାରୁଣୀ—ଦିଅ—

ନାରାୟଣ—ଭୁଲିଛି—

ଭିକାରୁଣୀ—ତେବେ, ତୁମେ ବଦ୍‌ନାମରେ ପଡ଼ିବା ନାହିଁତ, ପଡ଼ିବ କିଏ ?

ନାରାୟଣ—ତୁମେ କିଏ ?

ଭିକାରୁଣୀ—ଭିକାରୁଣୀ ।

ନାରାୟଣ—ତୁମକୁ ଦେଲେ, ମୋର ସୁନାମ ଫେରି ପାଇବ ?

ଭିକାରୁଣୀ—ତୁମର ବଦ୍‌ନାମ ମଧ୍ୟ ସୁନାମ ହୋଇ ଯିବ ।

ନାରାୟଣ—କେମିତି ?

ଭିକାରୁଣୀ—ଯେମିତି ନୂଆ ଅତୁଆ ରେ, କଳବଳ ହୋଇ ପୁଅ ମାକୁ ବେଳେ ବେଳେ ଡାଆଣି, ରାକ୍ଷସୀ ବୋଲି ହିଙ୍ଗାସେ, ଆଜ ମା' ସେହି ବଦ୍‌ନାମକୁ ସୁନାମ ମଣି ଧେଇ ଧେଇ ହୋଇ ନାଚେ, ଠିକ୍ ସେମିତି । କୁହତ—

—ଗୀତ—

ମା' କି କେବେ ହୁଏ ସ୍ୱଷ୍ଠୀ ?
ଅଭୟା ବରଦା ସେ ଯେ, କେ କୁହେ କେ ସର୍ବନାଶୀ ?
ସର୍ବହରା ସନ୍ତାନ ଯେ, ଧରେ ମା କୁଳୁରେ ନିଜେ
ସବୁ କ୍ଲେଶ ଦୁଃଖ ହରି, ହୃଦ୍‌ପଦ୍ମା ନାଚେରେ ହସି ।
ମା' ନାମ ଯେ କରଇ ସାର, ଭାବନା କି ବହରେ ତାର,
ସବୁ ସ୍ନେହ ଅଜାଡ଼ି ଦେଇ, ମା' ହୁଏରେ ତାହାର ଦାସୀ ।

ନାରାୟଣ—ତୁମେ ଏଇ ଗହଣା ଚିକ ନିଅ ।

ଭବାନୁଣୀ—ତୁମର ଗହଣା ତ ?

ନାରାୟଣ—ନା' ଚୋଇର ।

ଭବାନୁଣୀ—ଗ୍ରେସ୍ କର୍ଛ ନିଶ୍ଚେ—

ନାରାୟଣ—ଗ୍ରେସ୍ ?—ନା—ହଁ, ଜବରଦସ୍ତି ଛଡ଼ାଇ ଅଣିଛୁ ।

ଭବାନୁଣୀ—ତେବେ ଏ ଡକାଏତି ମାଲ, ନେବି କେମିତି ?—କ'ଣ ବନ୍ଦୀ ହେବାକୁ ?—ତା ଯା' ବା କେଉଁଠି, ଏ ଗୁଡ଼ାକ ମୋର କ'ଣ ହେବ—ଦେଖୁଚେ କ'ଣ ଅଜ ଥାନ ଅଛି, ପିନ୍ଧିବାକୁ ?

ନାରାୟଣ—ଏତେ ଗହଣା ତୁମ ଠେଇଁ ?

ଭବାନୁଣୀ—( ମୃଦୁ ମୃଦୁ ହସିଲେ )

ନାରାୟଣ—ସେ ଦିନ ତ ତୁମ ଦେହରେ ଗହଣାର ଗନ୍ଧ ବାସନା ସୁଦ୍ଧା ନଥିଲା, ଭବାନୁଣୀ ?

ଭବାନୁଣୀ—ହଁ, କିଏ ଜଣେ ବାଇଜୀ ଅସିଥିଲେ ଏ ମୁକାମକୁ···

ନାରାୟଣ—ଲକ୍ଷ୍ମୀ ?

ଭଜାରୁଣୀ—ହଁ ଲଛମୀ ବାଈଜା । ସେ ମା ଜରକାଙ୍କ ପହିଲି ପୂଜାଦିନ ବଡ଼ଭୋର, କୋଇଲି ବୁଡ଼ ନ ଦେଉଣୁ, ବୈତରଣୀ ନଈରେ ବୁଡ଼ ପାରି, ଏଇ ଗହଣାକଟି ମୋତେ ଦେଇ, ଗେଲୁଅ ଖଣ୍ଡେ ସାର କରି—

ନାରାୟଣ—ଦେଶତ୍ୟାଗିଣୀ ହେଲେ । ମୁଁ ବି ସେଇଆ କରିବି—

ଭଜାରୁଣୀ—ଗେଲୁଅ ପିନ୍ଧିବ, ଧାରୁଅ ଥାଇ ?

ନାରାୟଣ—ମୋତେ ଧାରରୁ ମୁକ୍ତ କର, ଭଜାରୁଣୀ—କୁହ ତୁମେ, କିଏ ଶୁହଁ ?

ଭଜାରୁଣୀ—ମୁଁ ଶୁହେଁ, 'ତୁମକୁ' ।

ନାରାୟଣ—ମୋତେ ? ( ମନର ଏହି ଭଳି ଘଟଣା ସନ୍ଧ ବେଳେ, ଭଜାରି ଓ ଭଜାରୁଣୀ ଅନ୍ତର୍ଦ୍ଧାନ ହୋଇ ଗଲେ । ବୁଲି ନାରାୟଣର ସେହି ଶେଷୋକ୍ତ କଥାର ଜେରଠାଣି ପ୍ରବେଶ କଲା କହି କହି )

ବୁଲି—ହଁ ତୁମକୁ ।

ନାରାୟଣ—(ସ୍ୱପ୍ନରୁ ଉଠିଲା ଭଳି, ଅଖିପଲା ) ବୁଲି ?

ବୁଲି—ନାରଣ ଭାଇ, ଭାରି ବିପଦ ।

ନାରାୟଣ—କି ବିପଦ, ବୁଲି ?

ବୁଲି—ବର ପଳେଇଛି ।

ନାରାୟଣ—ବର ପଳେଇଛି ?

ବୁଲି—ବାହା ହେବନି ।

ନାରାୟଣ—ବାହା ହେବନି ?

ବୁଲି—କନିଅ-ସୁନା ଯା' ଦେବାକୁ କୁହା ହୋଇଥିଲା, ତା' ଦିଅ ହେଲା ନି ବୋଲି ।

ନାରାୟଣ—ଆଉ କିଏ ହେଲେ ବର ନାହିଁ ?

ବୁଲି—ସେଇ ଭଣ୍ଡା ତୁ—ଅଲେ, ହୁଲହୁଲି ଦିଅଲେ—ବର ମିଳିଛି
( ନେପଥ୍ୟେ ହୁଲହୁଲି )

ନାରାୟଣ—ହୋଃ, ହୋଃ, ତୁମେ ଖେଳୁଥିଲ ?

ବୁଲି—ଅସ ମ, ଅମ ସାଙ୍ଗେ ଖେଳିବ—

ନାରାୟଣ—ଆଜି ତା'ଙ୍କୁ ନେଇ ଖେଳ, ବୁଲି—ମୁଁ ଅଇଛି କି…

ବୁଲି—ଇଁ ହୁଁ—ତୁମେ ଯେମିତି ଖେଳ, ସେମିତି କ'ଣ ଅଜି ଖେଳିବେ ?

ନାରାୟଣ—କେମିତି ?

ବୁଲି—ସେଦିନ ଘରମଣି ହେଲି ବୋଲିଥିଲ କଥା, ଥରେ ମନେ ଅଛି ?

ନାରାୟଣ—ଦେଖ, ବୁଲି—ମୋର ବର୍ତ୍ତମାନ ଫୁରୁସତ୍ ନାହିଁ—ହଁ, ବାପା ତୁମର ଘରେ ଅଛନ୍ତି ?

ବୁଲି—ଘରଛାଡ଼ି ଅଜି ଯିବେ କୁଆଡ଼ିକି ?—ତୁମେ ପରା ତାଙ୍କୁ ଗାମରୁ ବାହାର କରି ଦେଇଛ ?

ନାରାୟଣ—ବୁଲି—

ବୁଲି—ଦୁଃଖ କରୁଛ?—ଭଲ କରିଛ ମ!—ଗାମ, ଗାମ ବୋଲି ବାପା ଘରେ ଦଣ୍ଡେ ହେଲେ ରହୁଥାନ୍ତେ ନାହିଁ—ହଁ, ତୁମେ ଦେଖିବାକୁ ଯାଉଛ ?

ନାରାୟଣ—ତାଙ୍କୁ ?

ବୁଲି—ବାପାଙ୍କ ଦେହ ଭଲ ନାହିଁ। 'ଠାକୁରେ ବାପାଙ୍କ ଦେହ ଭଲ କରି ଦିଅ'—ଏତେକ ଯଦି ମୋ'ର ହୋଇ କଣାନ୍ତ।

ନାରାୟଣ—ତୁମେ ଅସୁନ ? (ଭିତର ଅନ୍ଧାରରେ ବାଞ୍ଛିରାମ ଛାୟାମୂର୍ତ୍ତିପରି ଆସି ଠିଆ ହେଲା )

ବୁଲି—ଅଲେ ମୋ ବୌଲେ—ଅପା ସେଠି ଅଛି।

ନାରାୟଣ—ଅପା ଦେଖିଲରେ ?

ବୁଲୁ—ତୁମ ପାଇଁ ପରା ଅଧିଆ ପଡ଼ିଛନ୍ତି ।

ନାରାୟଣ—ମୋ ପାଇଁ ?

ବୁଲୁ—ଆଉ କ'ଣ ? ତା' ନ ହେଲେ, ତୁମେ ଏମିତି ହେଣ୍ଡ୍ରିପାରୁ ବୁଲୁଥାନ୍ତ କେମିତି ?

ନାରାୟଣ—ଶୋଭ ! ( ଚାଲିଯାଉଥିଲେ )

ବୁଲି—ହଁ ଦେଖ—ମୁଁ ଏଠି ଖେଳୁ ଥିଲି ବୋଲି ଅପାକୁ ଯେମିତି···

ନାରାୟଣ—କହିଲେ, ଚମୁଟି ଦେବ ପରା ?—( ଚାଲିଯାଉଥିଲେ )

ବୁଲୁ—ଆଉ ଗୋଟିଏ କଥା ଶୁଣ, ଏଥର ଦୋଲ ପୁନେଇରେ ଅପା ପାଇଁ ତୁମକୁ ଆଉ ଅବିର ଦେବାକୁ ପଡ଼ିବ ନି ।

ନାରାୟଣ—କାହିଁକି ?

ବୁଲୁ—ତୁମ କଥା ପଡ଼ିଲେତ ଅପା ମୁହଁରେ ଘଁପ ଘର୍ଏ ଅବିର ବୋଳି ହୋଇଯାଏ ।

ନାରାୟଣ—ଓଃ ! ( କସାଘତ ଅନୁଭବ କଲାଭଳି ଚାଲିଗଲେ )
[ ବାଞ୍ଛାରାମ ଅନ୍ତରାଳରେ ରହି ସବୁକଥା ଶୁଣୁଥିଲେ—ନିଜକୁ ସମ୍ଭାଳି ନପାରି ଅଟ୍ଟହାସ୍ୟ ପୂର୍ବକ ପ୍ରବେଶ କଲେ ]

ବାଞ୍ଛା—ହୋଃ-ହୋଃ-ହୋଃ

ବୁଲୁ—( ଚାଲି ଯାଉ ଯାଉ, ଫେରି ) କିଏ ତୁମେ ?

ବାଞ୍ଛା—ଡର ନା, ବୁଲୁ ।

ବୁଲୁ—ତୁମେ ମୋ ନାଁ ଜାଣ ?

ବାଞ୍ଛା—ମୁଁ ପରା ତୁମ ନାରଣଭାଇର ସାନ—

ବୁଲୁ—ତୁମେ ମିଛ କହୁଚ । ତାଙ୍କର ତ—

ବାଞ୍ଛା—ଅଜ ବେହୁ ଭଲ ନାହିଁ ।—ତା ନୁହେଁ, ମୁଁ ପିଲାଦିନୁଁ ବନାବସର ଜଣେ ଜମିଦାରଙ୍କ ପୋଷାପୁଅ ହୋଇ ଏଠୁ ଗୁଲିଯାଇଚ କି ନା, ସେଇଥିପାଇଁ ତୁମେ ମୋତେ ଦେଖିନ ।

ବୁଲି—ସତେ ?—ତେବେ ତୁମ ନାଙ୍ଗଟା ନାରଣଭାଇର ନାଙ୍କ ଭଲ ନୁହେଁ—ଭାରି ବେଢଙ୍ଗିଆ ।

ବାଞ୍ଛା—ଖୁବ୍ ଉଗ୍ର—ନାଁ ?

ବୁଲି—କୋଚିଲାଖାଇ ନାଙ୍କ ଭଳି—

ବାଞ୍ଛା—ସେଇତ ରାଜ-ଲକ୍ଷଣ । ତୁମର ଗୁହାଳର ଅବଧାନଙ୍କୁ ପଚାରିଲେ, ସେ କହିବ ।

ବୁଲି—ସତେ !—ବେଶ୍, ମୁଁ ତୁମକୁ ନାନାଭାଇ ବୋଲି ଡାକିବି ।

ବାଞ୍ଛା—ବେଶ୍ ବେଶ୍—ହଁ, ତୁମ ଅପା ନାରଣଭାଇକୁ ଖୁବ୍ ଭଲ ପାଏ, ନା ?

ବୁଲି—ତମକୁ ବି ପାଇବ ।

ବାଞ୍ଛା—ମୋ ସଙ୍ଗେ ଏଇଠି ଥରେ—

ବୁଲି—ଚାହିଁକି, ଯାଜ ନ ଦେଜଲକୁ—ଅପା ଅଛି—ନାରଣ ଭାଇ ଅଛି । ଅଲେ ମୋ ବୋଝଲେ । ଏ' କିଏ ଅସୁଚି, ଏତେ ସହଳ ସହଳ ?—ଅପା ତ । ନାରଣ ଭାଇର ଦେଖା ହୋଇ ନ ନିସ୍ତେଁ । ନାନାଭାଇ, ତୁମେ କହିଦେବ, ନାରଣଭାଇ ଦେଜଲକୁ ଯାଇଛି, ଖୋଜୁଥିବ—ମୁଁ ପଳାଏ ଲୋ ମା—ହଁ, ଦେଖ ନାନା-ଭାଇ, ମୁଁ ଏଠି ଥିଲି ବୋଲି, ଯେମିତ କହି ନ ଦିଅ ଅପାକୁ—

ବାଞ୍ଛା—ଚ୍ନେହିବ ?

ବୁଲି—ତୁମ ଜାଣିଲ କେମିତ ?

ବାଞ୍ଛା—ଏ···ତା' ଜାଣିବ ନା ?—ହଁ, ତୁମ ଅଶୁଗାର ନା ! ?

ବୁଲ୍—ଶୋଭ ! ମୋ ନାଁ ?

ବାଞ୍ଛା—ବୁଲ୍ !

ବୁଲ—ହୁଃ, ହୁଃ, ( ହସି ହସି ପଳାଇଗଲା )

ବାଞ୍ଛା—ଭଲ ମଜ୍ଜାଟାଏ—ନାରଣ ସଙ୍ଗେ ଦେଖା ହୋଇ ନ ଶୋଭର—ବାଃ ! ଜମିଦାର ସାଜ ଜଟିଦାରକୁ ଉନ୍ମାଦ କରୁଛି—ପ୍ରଜା ସାଜି ଗୋବନ୍ଦକୁ ଉନ୍ମାଦ କରୁଛି—ଏଥର ପ୍ରେମିକ ସାଜି ବନ୍ଧୁ ମହାନ୍ତିକୁ ଉନ୍ମାଦ କରୁଚ ! ସେଇଥିରେ ସେମାନେ ଅକ୍ତିଅର ହେବେ—ମୋର କାମ ହାସଲ ହେବ—ହେଇ ଅସିଗଲା ! ( ମୁହଁ ବୁଲାଇ, ରାସ୍ତା ମଝିରେ ବାଟ ଓଗାଳିକି ଭଳି ଠିଆ ହେଲା )

( ନିର୍ମଳାର ପ୍ରବେଶ )

ନିର୍ମଳା—( ବାଟଛାଡ଼ ଦେବାପାଇଁ ) ଚୁ, ଚୁ,

ବାଞ୍ଛା—ଛି, ମୋତେ ପୁଣି ଲାଜ ?

ନିର୍ମଳ—ତୁମେ କିଏ, ଗୁହୁଁ ନା ଏଣିକି ?—

ବାଞ୍ଛା—ଗୁହୁଁଲେ ତ ସ୍ୱୟଂ ଛାଡ଼ିବେ—ନ ଗୁହୁଁ ଛାଡ଼ିବାରେ ସିନା ପ୍ରେମର ପରଖ ?

ନିର୍ମଳ—ପ୍ରେମ !

ବାଞ୍ଛା—ଦେଉଳରେ ଯାଇ ଯେଉଁ ନାରଣଭାଇ ପାଇଁ ଅଧିଆ ପଡ଼ିଛ, ସେ ଯେ ଏଣେ ଛଟପଟ ହୋଇ ମରୁଛି—ସେ କଥା ତ—

ନିମଳା—( ଭୁଞ୍ଜିଯାଇ, ଅଭିନୟ କଲାଭଳି ) ନାରଣ ଭାଇ—

ବାଞ୍ଛା—ଚହଲ ଗୋଲ—ମୋ ପାଇଁ ସିନା ତୁମମାନଙ୍କର ଅଳି ଏ'ହାଳ !

ନିର୍ମଳ—ବେଶ୍ ତ, ମେଣ୍ଢାର ଦଳ, ତୁମର ହାତରେ ତ କଥା ।

ବାଞ୍ଛା—ତୁମେ ରାଜି ହେଲେ ତ ?

ନିର୍ମଳ—ବାଧା ହେବାକୁ ?—ହେଲେ, ତୁମେ ପର ଭାଇ, ମୁଁ ପର ଭଉଣୀ—ଭାଇକୁ ଭଉଣୀ କେବେ…

ବାଞ୍ଛା—ଛି ଛି, ତା' କି ମୁଁ କହିପାରେ କେବେ ?

ନିର୍ମଳ—ତେବେ ?

ବାଞ୍ଛା—ତମେ ତ ଜାଣ,—ମୋର ସଙ୍ଗାତ…

ନିର୍ମଳ—ବାଞ୍ଛାରାମ ?

ବାଞ୍ଛା—ହଁ, ତାର ଖାପରରେ ଅଛନ୍ତିକା ମୁଁ ଓ ମୋର ଯାନାସନ । ତା'ର ଯୋଗୁଁ ତମର ବାପା ବୋଉର ଏତେ ଦୁର୍ଦ୍ଦଶା । ତାକୁ ଯଦି ତୁମେ ବାଧା ହେବାକୁ ରାଜି ହୁଅନ୍ତ—

ନିର୍ମଳ—ଯଦି ରାଜି ନ ହୁଏଁ ?

ବାଞ୍ଛା—ତେବେ ଜାଣିବି, ତୁମେ ମୋତେ ଭଲ ପାଅ ନା—ତୁମର ବାପା, ବୋଉ, ଜମିଦାର ଭାଇକୁ ବଞ୍ଚାଇବାକୁ ଚାହଁ ନା—

ନିର୍ମଳ—କିନ୍ତୁ, ବାଞ୍ଛାରାମଙ୍କ ଯଦି ରାଜି ନ ହୁଅନ୍ତି ?

ବାଞ୍ଛା—ସେ'ଭାର, ମୋ'ତଳ ।

ନିର୍ମଳ—ଏତେ ଭାଗ୍ୟ ହେବ ମୋ'ର—ବାଞ୍ଛାରାମକୁ ମୁଁ ପାଇବି—ମୋ' ମନୋବାଞ୍ଛା ପୂର୍ଣ୍ଣ ହେବ ? ବାଞ୍ଛାରାମ—ବାଞ୍ଛାରାମ—

ବାଞ୍ଛା—ଏଇ ଯେ ବାଞ୍ଛାରାମ ତୁମର—( ମୁହଁ ଫେରାଇ ଦେଖି ) ନିର୍ମଳ ! ସଇତାନ ! କେତେଥର ଘରେ ମୋର ସେହି ଭୋରଡ଼ାର ଅପମାନ କରିଥିଲୁ ନା, ଦୂରେ ଫିଙ୍ଗି ଦେଇ ?

ନିର୍ମଳ—ଗୋଟେଇ ପାଖରେ ରଖିଛ, ସଇତାନ—ଆଜି ତା'ର ସମ୍ମାନ କରିବି—

( ଭୋରଡ଼ାକାଠି ବେଦମ୍ ପ୍ରହାର କରିବାକୁ ଲାଗିଲେ )

# ଷଷ୍ଠ ଦୃଶ୍ୟ

[ ଶରଜା ମନ୍ଦିରର ଭୋଗଣି ଦେଶ—ଜଭୟ ନାରଣି ଓ ଶୋଭ ଏକାଠ ଦେଉଳ ମଧ୍ୟରୁ ବାହାରି ଅସୁଥିଲେ ]

ନାରାୟଣ—ଓଃ, ସତ ସତେ ଯେମିତି ଭୋରଡ଼ାରେ କିଏ ମୋର ଛାତି ଓଟାରି ଦେଉଛୁ ।—ତୁମେ ଅଜି ଥରେ କୁହ ଶୋଭ, ଅଜି ଥରେ—ମୋ ରାଜା ଛଡ଼ା, ତୁମ ବାପା ବୋଉର ଅଉ କିଛି ଚିନ୍ତା ନାହିଁ ? ମୋର କୁଶଳ କାମନା କରି କରି, ମୋର ନାଁରେ ଘଟ ବସିଛୁ—ଦୀପ ଜଳୁଛୁ—ମନ୍ଦାର ବେଲପତ୍ର ଚଢୁଚି—ଧନବାନ୍ତ ଚଣ୍ଡୀପାଠ ଲାଗିଚି ।—ଅଜି ତୁମେ—ଘରଧନ୍ଦା ଛାଡ଼ି, ଏହି ଧନ୍ଦାରେ ମାତିଛ ? ଓଃ ।—

ଶୋଭ—ଦେଖ, ତୁମେ ଏମିତି ବ୍ୟସ୍ତ ହେଲେ, ବାପା ବୋଉ ଅଧିକ ବ୍ୟସ୍ତ ହେବେ । ଯାଏଁ, ମୁଁ ଗଲେ ବାପା ଖାଇବେ ।

ନାରାୟଣ—ତୁମେ ଯାଅ—ଯାଅ—ହଁ, ଏହି ଗହଣାଟକ—

ଶୋଭ—ପୁଣି ?

ନାରାୟଣ—ଠିକ୍, ଠିକ୍···କେବେ କହିବେ କ'ଣ ?—ମୁଁ ନିଜେ ଘେନିଯିବି,—କିନ୍ତୁ, ବାପାଙ୍କୁ ଏ ମୁହଁ—

ଶୋଭ—ଫେର୍—

ନାରାୟଣ—ସତେ ମୋର ସାହସ ଅଣ୍ଟୁନି, ଶୋଭ—ଏ ମୁହଁ—

ଶୋଭ—ଦେଖ—ଦିନେ ବୁଲିଦିନ ଯାଉ. ମନଟା ଟିକିଏ ସ୍ଥିରହେଉ, ଦମ୍ଭ ଧରୁ;—ହଁ, ଏଇ ନିଅ, ଫୁଲ, ବେଲପତ୍ର ଅଉ ମା'ଙ୍କ ସିନ୍ଦୁର । ( ଦେଇଦେଲେ )

ନାରାୟଣ—ମା'ଙ୍କ ସିନ୍ଦୁର ତୁମେ ମଥାରେ ଲଗାଇ ଦିଅ, ଶୋଭ—

ଶୋଭ—(ତାହାହିଁ କଲ )

[ ସେତିକିବେଳେ ସେହି ପୂର୍ବୋକ୍ତ ଭିକାରୀ ଭିକାରୁଣୀ ଗାଇ ଗାଇ ପ୍ରବେଶ କଲେ ଓ ବାଟେ ବାଟେ ଗୁଲିଗଲେ ]

ଭିକାରୀ ଓ ଭିକାରୁଣୀ— —ଗୀତ—

ପାହିଲାରେ ଘନରାତି ।
ସୀମନ୍ତର ସେହି ସିନ୍ଦୂର ରାଗେ ଗଗନ ଉଠିବ ମାତି ।
ମନ୍ଦିରେ ରଖ ଅସନ ପାତି
ଅନ୍ତରେ କର ପ୍ରୀତି ଅରତି
ସୁନ୍ଦରେ ସୁନ୍ଦର ମିଳନ ଅଜି ଖେଳିଯାଉ ନୂଆ ଭାତି ।

[ ସେହି ଗୀତ ଶେଷ ହେବା ସଙ୍ଗେ ସଙ୍ଗେ ଉଭୟେ ପରସ୍ପରକୁ ଏକ ଦିବ୍ୟ ଦୃଷ୍ଟିରେ ଗୁହିଁଲେ ଓ ଚେତନାରେ ଅନୁପ୍ରାଣିତ ହୋଇ ପରସ୍ପର ବିପରୀତ ଦିଗରେ ପ୍ରସ୍ଥାନ କଲେ ]

( ବରକନ୍ଦାଜ ଦ୍ୱୟ ସହ ବାଞ୍ଛାରାମର ପ୍ରବେଶ )

ବାଞ୍ଛା—ହଁ, ସେହି ଟୋକୀ—ଯେଉଁଠି ନଇ ଦାଢ଼େ ଦାଢ଼େ ଯାଇ ନିଛାଟିଆ ବାଟ ଧରିବ—ବୁଝିଲ ତ ?—

୧ମ ବରକନ୍ଦାଜ—ଜି—ରାମଜୀ—

ବାଞ୍ଛା—ଅଟ ପାଟି ଭିଡ଼ି ବାନ୍ଧି ଦେବ ।

୧ମ ବରକନ୍ଦାଜ—ଜୀ—

ବାଞ୍ଛାରାମ—ହଁ, ଖୁବ୍ ହୁସିଆର—କେହି ଦେଖିଲେ, କହିବ— 'ଜମିଦାର ସା'ନ୍ତଙ୍କ ହୁକୁମ—ଅମର କି ଗୁର୍?' ।

୧ମ ବରକନ୍ଦାଜ—ଜୀ, କେଉଁଠାକୁ ନେଇ ଯିବୁ, ହଜୁର ?

ବାଞ୍ଛାରାମ—ଅଃ—ନାରଖାନାକୁ ।

ବରକନ୍ଦାଜ ଦ୍ୱୟ—ଜୀ, ସ୍ୱମଜ୍ଞ—  ( ପ୍ରସ୍ଥାନ କଲେ )

ବାଞ୍ଛାରାମ—ମୁଁ ଏଣେ ଯାଏଁ, ପ୍ରଜାମାନଙ୍କୁ ଝିହାଇଦଏଁ ।

( ବିପରୀତ ଦିଗରେ ଚାଲିଗଲେ )

## ସପ୍ତମ ଦୃଶ୍ୟ

[ ସେହି ପୂର୍ବ ଗ୍ରାମ୍ୟ ପଥ—ପୂର୍ବ ଦୃଶ୍ୟର ଅନୁକ୍ରମରେ ଗୋଟାଏ କୋଳାହଳ ଶୁଣାଗଲା । କେତେକ ପ୍ରଜାସହ ବାଞ୍ଛାରାମ ପ୍ରବେଶ କଲେ ]

ବାଞ୍ଛାରାମ—ତୁମେମାନେ ହଲ୍ଲା କରନା—ମୋ' ସାଥିରେ ଚୁପି ଚୁପି ଆସ—ଦେଖିବ ନିଜ ଆଖିରେ, ତୁମର ଜମିଦାରଙ୍କର କୀର୍ତ୍ତି, ଅଉ ତୁମର ପ୍ରଜାବନ୍ଧୁ ବନ୍ଧୁ ମହାନ୍ତିଙ୍କ ପରିଗୁଣ—

ପ୍ରଜାଗଣ—( ପୁଣି କୋଳାହଳ କରି ଉଠିଲେ )

ବାଞ୍ଛାରାମ—ଚୁପ୍—  ( ସମସ୍ତଙ୍କ ପ୍ରସ୍ଥାନ )

( ଗୋବିନ୍ଦ ଓ ନିର୍ମଳର ବିପରୀତ ଦିଗରୁ ବେଗେ ପ୍ରବେଶ )

ଗୋବିନ୍ଦ—ମୁଁ କିଛି ବୁଝି ପାରୁନି, ନିର୍ମଳ ।—ହଠାତ୍ ଟାଁ ସାରା ଏମିତି ଚହଳ ପଡ଼ିଗଲା କାହିଁକି ?—କଟେରୀରୁ ପ୍ରଜାମାନେ ହଠାତ୍ ହାଉଳି କରି ଜମିଦାର ହୁଅସ ଅଡ଼େ ଧାଇଁଲେ କାହିଁକି ? ବରକନ୍ଦାଜ ଦୁଇଟାଙ୍କୁ ବି ଦେଖୁନି, କଥା କ'ଣ ?

ତୁମେ ବନ୍ଧୁ ଭାଇଙ୍କ ଘରଅଡ଼େ ଯାଅ—ମୁଁ କୁଅସକୁ ଯାଏଁ—( ପରସ୍ପର ବିପରୀତ ଦିଗରେ ପ୍ରସ୍ଥାନ କଲେ )

[ ସନ୍ନ୍ୟାସିନୀ ବେଶରେ ଲକ୍ଷ୍ମୀ ଉଦ୍‌ଭ୍ରାନ୍ତ ଭାବରେ ପ୍ରବେଶ କଲ ]

ଲକ୍ଷ୍ମୀ—କାହାକୁ ନାରଣ ସା'ନ୍ତେ ? କେଉଁଠି ତ ଖୋଜି ପାଉ ନା ? ଗ୍ରାମରୁ ବଦାୟ ନେବି, ତା' ଆଗରୁ ତାଙ୍କ ପଦରେ ପ୍ରଣାମ କରିଯିବି, ଏତିକି । ତାଙ୍କର ସରଳତା, ମୋର ଜଡ଼ତା ଭାଙ୍ଗିଛି, ମୋତେ ଏଇ ଦୀକ୍ଷା ଦେଇଛି—ସେ ମୋର ପରମ ଗୁରୁ, ସାକ୍ଷାତ୍ ନାରାୟଣ । ( ପ୍ରସ୍ଥାନ )

( ଶବର ଓ ଶବରୁଣୀର ବେଗରେ ପ୍ରବେଶ )

ଶବର—କେଉଁଠାକୁ ତୁମେ ଧାଉଁଛ ପୁଣି ?

ଶବରୀ—ଭକ—ଭକ—

ଶବର—ଭକ ତ ମାଗନ୍ତି—ଜମିଦାର ପୂଜା କଲେ—ତୁମର ରକ୍ତଚନ୍ଦନ ଦେଇଲେ—ଆଉ କି ଭକ ଚାହଁ ତୁମେ ?

ଶବରୀ—ରକ୍ତ—ରକ୍ତ—

ଶବର—ରକ୍ତଲାଳସୀ ! ଉନ୍ମାଦ, ଉନ୍ମାଦ କଲ ମୋତେ···

ଶବରୀ—ମୁଁ ଉନ୍ମାଦନୀ—ଧର, ଧର ତ୍ରିଶୂଳ—ମୁଁ ଧରୁଛି ଖଡ୍ଗ, ଖର୍ପର···ଧ୍ୱଂସ—ଧ୍ୱଂସ—

# ଅଷ୍ଟମ ଦୃଶ୍ୟ

[ ପୂର୍ବ ଦୃଶ୍ୟର ଅନୁକ୍ରମରେ ବନ୍ଧୁ ମହାନ୍ତି ବିକାରଗ୍ରସ୍ତ ରୋଗୀ ଭଳି ପ୍ରବେଶ କଲେ—ତାଙ୍କ ଆଖିରେ, ମୁଖରେ, ସ୍ୱରରେ ଗୋଟାଏ ଅବଶ୍ୟମ୍ଭାବୀ ଧ୍ୱଂସ ବା ପ୍ରଳୟର ଆତଙ୍କ ପରିସ୍ଫୁଟ ଦେଖା ଯାଉଥାଏ—ସେ ଯେମିତି ତାହା ପ୍ରତିରୋଧ କରିବାକୁ ଧାଇଁ ଆସୁଥିଲେ । ଦୃଶ୍ୟ ଦେଖାଗଲା—ତାଙ୍କରି ଗୃହ ସମ୍ମୁଖ ]

ବନ୍ଧୁ—ଜମିଦାରି ଧ୍ୱଂସ ହୋଇଯିବ—ଜମିଦାରୀ ଧ୍ୱଂସ ହୋଇଯିବ—ମୋତେ ଗୁଣ୍ଡଦିଅ—ମୁଁ କଟକକୁ ଯିବି—ଗୋବିନ୍ଦ ଲେଖିନ ପଠାଇ ଦେଇଛନ୍ତି, ସିଏସ୍ଥା ବୁଝିନେବ । ତଅସରୁ ତଲବ ଅସିଚ, ଗହଣା ସିନ୍ଦୁକର ଗୃବ ଜମା କରିନେବ । ଦେଖ ସାଅନ୍ତ ନାରାୟଣ ମୋର କାନ୍ଦୁଚି—ଭୁହାଇ ଭୁହାଇ ଡାକୁଚି 'ବନ୍ଧୁକା—ବନ୍ଧୁକା'—

( ବନ୍ଧୁ-ପତ୍ନୀର ବେଗେ ପ୍ରବେଶ )

ବନ୍ଧୁ-ପତ୍ନୀ – ଏ' କ'ଣ କରୁଚ ? ଉଠି ପାରୁ ନ ଥିଲ, ସାତଦିନ ହେଲା ଜପାସ – ତୋତେ ପାଣିବ—

ବନ୍ଧୁ—ଆଃ—ମୋର ନଦର—ମୋର କଟକ ।—ଏଇ ମୋର ପ୍ରଜା କାନ୍ଦୁଛନ୍ତି, ମୋ'ର ରାଜା କାନ୍ଦୁଛି—ଛୁନ ହୁଅ—ସ୍ଥିର ହୁଅ ( ଗମନୋଦ୍ୟତ )

( ବୁଲୁର ବେଗେ ପ୍ରବେଶ )

ବୁଲୁ—ଦେଉଳରେ ଅପା ନାହିଁ, ବାପା—

( ନିର୍ମଳର ବେଗେ ପ୍ରବେଶ )

ନିର୍ମଳ—ସାଇବେ ବ ନାହିଁ—ବାଞ୍ଛାରାମ ବାଟରେ ଛକି ଥିଲା, ସେଇ ନିଷ୍ଠୁର ଗୋଟାଏ କିଛି କାଣ୍ଡ କରିଛି ।

( ଉନ୍ମାଦିନୀ ଭଳି ଶୋଭା ପ୍ରବେଶ କଲା )

ଶୋଭା—ବାଞ୍ଛାରାମ ଅଜି ରାକ୍ଷସ-କବଳରୁ ମୋତେ ରକ୍ଷା କରିଛି— ମୋତେ ବାଟ ଦେଖାଇ ଘରକୁ ଘିଚ ଅଣିଛି, ବାବା !

ବନ୍ଧୁ-ପତ୍ନୀ—ଶୋଭା, ଶୋଭା—ଝିଅ ମୋ'ର—

ଶୋଭା—( ଗଦ୍ ଗଦ୍ ସ୍ବରେ ) ମୁଁ ଜମିଦାର ହାତରେ ଫୁଲ, ବେଲପତ୍ର ଦେଲି, କପାଳରେ ସିନ୍ଦୁର ଲଗାଇ ଦେଲି, ଅଜି ଜମିଦାର ଦ'ଟା ପାଇକ ପଠାଇ, ମୋତେ ସବାର ଚଢ଼ା କରାଇ ନେଇ ଯାଉଥିଲା, ତା'ର—

( ବାଞ୍ଛାରାମର ପ୍ରବେଶ )

ବାଞ୍ଛା—ନାଚଖାନାକୁ—

ଶୋଭା—ଓଃ—( ହିହରବାକୁ ଲାଗିଲା ଘୃଣା ଓ କ୍ରୋଧରେ )

( ପଧାନର ପ୍ରବେଶ )

ପଧାନ—ଅମେ ଅଖିରେ ଦେଖିଚୁ, ନେବାର ସା'ନ୍ତେ—କାନରେ ଶୁଣିଚୁ ପାଇକଙ୍କଠୁଁ—'ଜମିଦାରଙ୍କ ହୁକୁମ'—

ବନ୍ଧୁ—ନାରଣରେ ?

ଶୋଭା—ବୋଉ ଲୋ—( ବୋଉ ଉପରେ ଅଜାଡ଼ି ହୋଇ ପଡ଼ିଲା )

ବନ୍ଧୁ-ପତ୍ନୀ—ଏଚୁ ଗୁଲ, ମା—

( ଭୁଲ ଓ ଶୋଭାକୁ ଘେନି ବନ୍ଧୁ-ପତ୍ନୀ ଗୁଲିଯାଉଥିଲେ )

ନିର୍ମଳ— ମୋର ବିଶ୍ବାସ ହେଉନି ।

ବନ୍ଧୁ—ଠିକ କହୁଚ, ମୋର ବି ବିଶ୍ୱାସ ହେଉନି ।

ବନ୍ଧୁ-ପତ୍ନୀ—(ରହୁଯାଇ) ଉଆସରୁ ଚାଲିବ, ଗହଣା ପତ୍ରକର ଗୁଡ଼ିକ ଜମା କରି ନେବାକଥା—ଏ' ଗୁଡ଼ାକ ବିଶ୍ୱାସ ହେଉଛି ନି ? (ଗୃହାନ୍ତରେ)

ନିର୍ମଳ—ଏଁ । (ଲଜ୍ଜା ସଙ୍କୋଚରେ ଆଉ କିଛି ନପାରି ଗୃହାନ୍ତରେ)

ପଧାନ—ଜମିଦାରଙ୍କର ଏ ଅନ୍ୟାୟ, ଅମେ କଦାପି ସହିବୁ ନାହିଁ ।

ବାଞ୍ଛା—ଏଥିରେ ମହାପାତ୍ର ବଂଶକୁ ଯେତିକି ନିନ୍ଦା, ମହାନ୍ତି ବଂଶକୁ ଠିକ୍ ସେତିକି ନିନ୍ଦା । ଯଦି ତୁମେ ନିନ୍ଦା ଅପବାଦ ଘୋଡ଼ାଇବାକୁ ଚାହଁ—

ବନ୍ଧୁ—ପାରିବ, ପାରିବ ତୁମେ ବାପ ?—ଜାଣନାହଁ ତୁମେ, ବାଞ୍ଛାରାମ ! ମହାପାତ୍ର ଓ ମହାନ୍ତି ବଂଶ ମଧ୍ୟରେ କି ଅଭେଦ ପ୍ରୀତି ସଂପର୍କ—ଚଉଦ ପୁରୁଷାନୁକ୍ରମ ଚାଲି ଆସୁଛି । ମହାନ୍ତି କୁଳ ସନ୍ତତି ଏହି ଲେଖନୀ ତାର ପ୍ରମାଣ—ମୋ ଅଣ୍ଟାରେ ଅଦ୍ୟାପି ଖୋସା ରହିଛି । କୁହ, କେଉଁ ଉପାୟରେ ଆଜି ଉଭୟ ବଂଶରୁ ସେହି କଳଙ୍କ କାଳିମା ଦୂର ହେବ ?

ବାଞ୍ଛା—ଉଭୟ ବଂଶର ବିଚ୍ଛେଦରେ—

ବନ୍ଧୁ—ଅର୍ଥାତ୍ ?

ବାଞ୍ଛା—ଉଭୟ ମଧ୍ୟରେ ପ୍ରୀତି ସଂପର୍କ ଅଟୁଟ ରଖିବାକୁ ହେଲେ, ଜଣକୁ କରିବାକୁ ହେବ—

ବନ୍ଧୁ—ତ୍ୟାଗ ?

ବାଞ୍ଛା—ହଁ, ଦେଶତ୍ୟାଗ ।

ବନ୍ଧୁ—ବେଶ୍, ଏହି ସାମାନ୍ୟ ତ୍ୟାଗ ଫଳରେ ଯଦି ମହାପାତ୍ର ବଂଶର କଳଙ୍କ ଲିଭିଯାଏ, ତେବେ ମହାନ୍ତି ବଂଶର ମୁଁ

ବନ୍ଧୁ ମହାନ୍ତି, ଅଜି କଳଙ୍କର ସମସ୍ତ ପସରା ମୁଣ୍ଡାଇ ଦେଶତ୍ୟାଗୀ ହେବାକୁ ପ୍ରସ୍ତୁତ;—ଭୁଲିଅ ବୋଝ, ଭୁଲ, ଶୋକ, ଅଜ ଚନ୍ଦ୍ରା ଶୋଭ ନାହିଁ—ଅସ ବାହାରେ—ଜମିଦାରଙ୍କୁ ନିନ୍ଦା କଳଙ୍କରୁ ମୁକ୍ତ କରିପାରିଛି, ମହାପାତ୍ର ବଂଶର ମର୍ଯ୍ୟାଦା ରକ୍ଷା କରିପାରିଛି ।

[ ଗୋଟାଏ ଉନ୍ମାଦନାରେ ଦ୍ୱାର ଖୋଲି ଭିତରକୁ ଚାଲିଗଲେ ]

ବାଞ୍ଛାରାମ—(ବାହାର ପଟୁ ଶିକୁଳି ଲଗାଇ ଦେଇ) ଜାଣ, ପଧାନେ, ଜମିଦାରର କଳଙ୍କରେ ପ୍ରଜାର କଳଙ୍କ । ଯଦି ସେହି କଳଙ୍କ ଏକାବେଳକେ ଦୂର କରି ଦେବାକୁ ଚାହଁ—କାଳିମା ପୋଛି ପକାଇବାକୁ ଚାହଁ—ତେବେ, ଏଇ ସୁଯୋଗ—ଜାଳିଦିଅ, ପୋଡ଼ିଦିଅ—କଳଙ୍କର ନୀଡ଼, କଳଙ୍କ ସଙ୍ଗେ ଭସ୍ମ ହୋଇଯାଉ ।

ପଧାନ—କ'ଣ କହୁଛ, ରାମଜି ?

ବାଞ୍ଛା—'ରୋଗର ଶେଷ, ଋଣର ଶେଷ'—ଶିଖିଥିଲ କି, ଭାଇ ।

ନାରୀ—( ନେପଥ୍ୟ ଦୂରରେ ) ମୋର ବଦନାମ—ମୋର ନିନ୍ଦା—ଅସହ୍ୟ ଅସହ୍ୟ—

ବାଞ୍ଛା—ଏହି ଶୁଣ, ଭାଇ—ତୁମର ରାଜା—ନିନ୍ଦା, ବଦନାମ ଯୋଗୁଁ ବଣ ମାଗନ୍ତି—ଏଠାକୁ ଧାଇଁ ଆସୁଛନ୍ତି ବାଘୁଆ କୁକୁର ଭଳି—ନିଜେ ଏହି ଘରକୁ ବାଡ଼ ପୋଡ଼ି ଦେବାକୁ । ତୁମେ ରାଜାର ପ୍ରଜା—ରାଜକାର୍ଯ୍ୟ କର, କର୍ତ୍ତବ୍ୟ ପାଳନ କର ।

ପଧାନ—ଠିକ୍ କହୁଛ, ରାମଜି—ଆଉ ଡେରି ନୁହେ—ନିଆଁ ଅଣା ଜାଳି ଦେବା ଅସ, ଭାଇମାନେ—ଅମେ ରାଜାର ପ୍ରଜା,

ବୁଢ଼ା ତହସିଲଦାରର ନୋହୁଁ । ବନ୍ଧୁ ମହାନ୍ତି ଏହି ଶିକ୍ଷା ଦେଇଛି ଆମକୁ । ସେଇ ଶିକ୍ଷା ତାଙ୍କରି ଠାରେ ଲଗେଇ କାମରେ ଦେଖାଇବା ।

( ପ୍ରଜାମାନଙ୍କର କୋଳାହଳ )

ବାଞ୍ଛା—ଏହି ଦେଖ, ସେହି ଗୋବରଦାଟା ଆସୁଛି—ବନ୍ଧୁ ମହାନ୍ତିର ଅସଲ ଚେଲା । ମୋର ହୁକୁମନାମା ରଦ କରି, ଆପଣା-ହୁକୁମ ଜାରି କରିଥିଲା—ତୁମ ଚୋଟି ଗପି କଡ଼ାକାନ୍ତିରେ ଖଜଣା ଆଦାୟ କରିଥିଲା—ସେ ଯଦି ବାଧା ଦିଏ ?

ପଧାନ—ତାକୁ ବି ଆମେ ପୋଡ଼ି ଜାଳି ଦେବୁ ।

ବାଞ୍ଛାରାମ—ଅରେ ରେ, ଟସେହି ବାଇଚ୍ଚଟା ଆସୁଛି । ଚେଉଁଆ ପିଲ ମାତାଜୀ ସାଜିଛି—ଅଗିରେ ଡେଲ୍ ଢଳାଇ ତୁମର ଜମିଦାରୀ ଶୋଷିବ, ଏଇଥିପାଇଁ...ଘୁଡ଼, ସେ ମାଇପି ଲୋକ—ମାଇପି ପ୍ରାଣରେ ନାହିଁ ନାହିଁ, ଯଦି ବାଧାଦିଏ ?

ପଧାନ—ତାକୁ ବି ଆମେ ଛାଡ଼ିବୁ ନା ।

ବାଞ୍ଛା—ମୂର୍ଖ ଜମିଦାର ଯଦି ସେମାନଙ୍କ ଖାପରରେ ପଡ଼ି ବାଧାଦିଏ ?

ପଧାନ—ଜମିଦାର ବୋଲି ଖାତର ରଖିବୁ ନା—

ବାଞ୍ଛା—ତେବେ ଶୀଘ୍ର—ହେଲା କରନା—ସେମାନେ ଆସିବା ପୂର୍ବରୁ— ( ପଧାନଙ୍କ ପ୍ରସ୍ଥାନ )

—ମୁଁ ବି ପଛରେ ଥାଇ ମଙ୍ଗଧରି କାମ କରେଁ ।

[ ନେପଥ୍ୟ କୋଳାହଳ ଓ ଜଳନ୍ତା ନିଆଁ ଅଟା ଧରି ପ୍ରଜାମାନଙ୍କର ପ୍ରବେଶ ]

( ଗୋବରଦ, ଲକ୍ଷ୍ମୀ ଓ ନାରାୟଣର ପ୍ରବେଶ )

ନାରାୟଣ—ଏ କ'ଣ ଦେଖୁଛି ? ନିଆଁ ଦେଲା କାହିଁକି ?—ବନ୍ଧୁ କଉ କାହାନ୍ତି ?

ପଧାନ—ଏହି ଘର ଭିତରେ—( ନିଅଁ ହୁଳାଧରି )
ବାଞ୍ଛା—( ଅନ୍ତରାଳରେ ଥାଇ ) ବାଃ ଓଗୋଲ—ହୁସିଅରି···
ଗୋବିନ୍ଦ—ବାଞ୍ଛାରାମ—
ପଧାନ—ତାହାଙ୍କୁ ବାଃ ଛାଡ଼ିବୁ ନି ।

[ ଗୃହାଭ୍ୟନ୍ତରରୁ ସେହି ଭିକାରୁଣୀର କଣ୍ଠସ୍ୱର ଶୁଣାଗଲା—
'ରକ୍ତ—ରକ୍ତ' ]

ନାରାୟଣ—ସେହି ଭିକାରୁଣୀ—ରକ୍ତ ମାଗୁଛି—ରକ୍ତ ଦେବ—
ମୋର ବଦ୍‌ନାମ, ସୁନାମ ହୋଇ ଉଠିବ ।

ଲଛମୀ—ତୁମର ସାମାନ୍ୟ ରକ୍ତ—ସେଥିରେ ମା ସନ୍ତୁଷ୍ଟ ହେବେ ନି । ମା' ଗୃହୁଛନ୍ତି ଅନେକ, ବହୁତ ରକ୍ତ । ମୋ'ଠାରେ ତାହା ସମ୍ଭବ । କେତେ କେତେ ଜମିଦାର—ନବାବ ତରୁଣ କିଶୋର ଦଳ ତାଙ୍କର ତାଜା ରକ୍ତ ଢାଳି ଦେଇଛନ୍ତି ଆଜିଯାଏ, ଏଇ ରୂପଜୀବୀର ରୂପ-ଖପର୍ରରେ । ( ପଥ ଅବରୋଧ କଲା )

ବାଞ୍ଛା—ଜାଳିଦିଅ ଆଗେ ସେଇ ସବୁତାନୀଟାକୁ ।

[ ସମସ୍ତେ ନିଅଁ ହୁଳା ଧରି ଲଛମୀକୁ ଘେରିଗଲେ ]

ନାରାୟଣ—ଓଃ—( ଗୋବିନ୍ଦ ଉପରେ ଢଳି ପଡ଼ିଲେ )
ଗୋବିନ୍ଦ—ସା'ନ୍ତେ, ସା'ନ୍ତେ—( ଜହ୍ନ ଜହ୍ନ, ଘେନି ଗୁଲିଗଲେ )
ଲଛମୀ—ମା—ମା···ନେ ମା ରକ୍ତ—ଭରି ତୋର ଖପର—ଖେଳୁ ଲହ ଲହ ଜିହ୍ୱା—ଉଠୁ ଖଡ୍‌ଗପାତ—ଅଗ୍ନିବାଣ ଛୁଟୁ ନେତ୍ର—ପୋଡ଼ି ଯାଉ ହିଂସା ଦ୍ୱେଷ, ଦଳ ପାପ ଧର୍ମ; ପୁଣ୍ୟେ ଦେ ମା ଅଭୟ ।

( ଜହ୍ନ ଜହ୍ନ ନିଅଁ ଝାସରେ ଢଳି ଭୂତଳଶାୟୀ ହେଲେ )

ବାଘିନୀ ଓ ପ୍ରଜାଗଣ—ର...ର...ର ( ଭୀଷଣ କୋଳାହଳ ଉଠିଲା)

[ଧିସ୍ କମ୍ପିଉଠିଲା । ଶିବଭାଣ୍ଡବର ପ୍ରଳୟ-ଡମ୍ବରୁ ସଙ୍ଗେ ଅବଲୁଣ୍ଠିତା ହେଲେ, ବିରଜା ଜନନୀ ଅଗ୍ନିମୟୀରୂପ । ଏକ ଦିଗରେ ଅଗ୍ନି ବର୍ଷଣ କରି ଶତ୍ରୁମାନଙ୍କୁ ଛାରଖାର କରିଦେଲେ ଓ ଅନ୍ୟ ଦିଗରେ ବନ୍ଧୁ ମହାନ୍ତ ପ୍ରଭୃତିଙ୍କୁ ଅଶୀଷ-ଶୀତଳ-କର ପଲ୍ଲବ ତଳେ ସ୍ଥାୟୀ ପ୍ରଦାନର ଅଭୟ ଦେଲେ]

-ବିଶ୍ରାମ-

# ପ୍ରଥମ ଦୃଶ୍ୟ

[ ପୂର୍ବ ଦୃଶ୍ୟର ପରିଶେଷରେ ଯେଉଁ ପ୍ରଳୟ-ତାଣ୍ଡବଲୀଳା ହୋଇଯାଇଥିଲା, ତାହାର ଅବସାନ ଘଟିଛି । ପ୍ରକୃତି ନିସ୍ତବ୍ଧ । ସକାଳ ହେଲା । ପକ୍ଷୀକୂଜନ ଶୁଣାଗଲା । ରଘୁଆଳ ବାଳକଟିଏ ବଂଶୀ ବଜାଉଛି । ଗାଈଗୋରୁ ହମ୍ବାଳି ଛାଡ଼ୁଛନ୍ତି । ପ୍ରକୃତି ପୁଣି ନୂଆ ପ୍ରାଣରେ ମାତି ଉଠିଛି । ଦୃଶ୍ୟ ଦେଖାଗଲା—ଜଗନ୍ନାଥ ସଡ଼କ—କୂଳ ପଟରେ ବିସ୍ତୀର୍ଣ୍ଣ ପ୍ରାନ୍ତର ]

ରଘୁଆଳ—( ଗାଇ ଗାଇ ପ୍ରବେଶ କଲା )

ବାଟୋଇ ବାଟ ଭୁଲିରେ କେଉଁ ଦେଶେ ତୋ ଘର
କେତେ ଦୂରେ ଗାଁ ?
କିଏ ସେ ତୋର ବନ୍ଧୁ ଜନ—ଜାଣୁ କି ତାର ନାଁ
କେତେ ଦୂରେ ଗାଁ ।
ଖରା ପବନ ଝଡ଼ ବରଷା—ବାଟୋଇ—
ଉହୁଁକି ତୋର ନାହିଁରେ ଦଶା
ହାଲିଆ ହୋଇ ନ ଛୁଡ଼ ବାଟ, ଥରେ ଫେର ଘୂହିଁ ।

( ସପରିବାରେ ବନ୍ଧୁ ମହାନ୍ତି ପ୍ରବେଶ କଲେ—
ବାଟଚଲା-ପଥିକ ସେମାନେ )

ବୁଲି—ଆଜି କେତେ ବାଟ, ବାପା ?

ବନ୍ଧୁ—ମା—(କିଛି କହିଗଲେ )

ଗୋପି—କେତେ ଷ୍ଟେସନରେ ହେଉଚୁ ମ ?—ସତେ ଯେମିତି ବାଟ ସରିବ ସରିଲ, ସୁଖର ଘୋଡ଼ା ଦଉଡ଼ା—

ବୁଲି—ଦେଖୁଚ ତ, ବାପା ?—

ବନ୍ଧୁ—ଛି ଗୋପି, ତା' ସଙ୍ଗେ ଲଗା ନା ।

ବୁଲି—ବାପା !—

ବନ୍ଧୁ—ମା—

ବୁଲି—ଆମେ କୁଆଡ଼େ ଯାଉଥାଇଁ ?

ବନ୍ଧୁ—ବନ୍ଧୁଘରକୁ ଲୋ, ମା ।

ବୁଲି—କୁଣିଆଁ ଘରକୁ ? କେବେ ତ କେତେ ମୂର୍ଖ—କେତେ ପିଠା—କେତେ ଅରସା—

ଗୋପି—ତୋଲର ତୋଲ ଚନ୍ଦ୍ରା ଛଡ଼ା କୁନିଅରେ ଆଜ କଣଛନାହିଁ ।

ବୁଲି—ତୋର କମିତ ନାରଣ ଖାଇ ଚନ୍ଦ୍ରା ଛଡ଼ା ଆଜ କଣ ନାହିଁ ?

ଗୋପି—( ପୂର୍ବ ସ୍ମୃତି ଦଂଶନରେ କଲା ପଡ଼ିଗଲା )

ବନ୍ଧୁ-ପତ୍ନୀ—( ପଛରେ ଆସୁଥିବା ସ୍ୱାମୀଙ୍କୁ ଅପେକ୍ଷା କରି ରହିଥିଲେ; ବୁଲିର ଏହି କୁଣିଆଁ କଥାରେ ଟିକେ ଉଠି କହିଲେ ) ବୁଲି !—ପୁଣି ସେଇ କୁଣିଆ କଥା ? ହେ ହେ, ଶୁଣୁଚ ? ଖଟୁଅଛା ବାହିଁ, ଦେଖା ଯାଉନ ତ ? ଆ'ତ ବୁଲି··· ( ବୁଲିକୁ ନେଇ ଗଲିଗଲେ )

ବନ୍ଧୁ—ଶୋଭ—ମା, ମନ ଝୁଣା କରୁଚୁ ? କିଛି ଚିନ୍ତା କର ନା, ମା ! ତୋର କାରଣ ଭାଇ ଅନ୍ୟାୟ କର୍ ପକେଇଛି । ସେଥିପାଇଁ ମନକୁ ଅଦ୍ଭୁର ଥସ୍ତକର ଠାକୁରଙ୍କୁ ତା'କଥା ଜଣା । ଅହା ! ସେଚଟା ତାଙ୍କୁ ଭେଟେ ବନେଇଚ; ଏକାବେଳକେ କାଙ୍ଗଳା ବାଙ୍ଗଳା କର ଯକେଇଚ !

ଶୋଭ—ବାପା—( ପିତାର ଗୋଡ଼ତଳେ ଅଷ୍ଟାଙ୍ଗ ହୋଇ ପଡ଼ିଲା )

ବନ୍ଧୁ—ଠାକୁରେ ତୋ କଥା ନିଶ୍ଚେ ଶୁଣିବେ—ତୋର କାରଣ ଭାଇ ନିଶ୍ଚେ ବାଟକୁ ଫେରି ଆସିବ ।

ଶୋଭ—( ପିତାର ପାଦ ଧୂଳି ନେଇ ମଥାରେ ଲଗାଇଲା ଓ ଧ୍ୟାନ ଦୃଷ୍ଟିରେ ଠାକୁରଙ୍କୁ ପ୍ରଣାମ କଲା )

( ବନ୍ଧୁ-ପତ୍ନୀର ବେଗେ ପ୍ରବେଶ )

ବନ୍ଧୁପତ୍ନୀ—ଶୁଣୁଛ ? ଭାଇଟା କହୁଚି ଅଜପିଦ କି, ଏଇଠୁ ସେ ଚଦା ନବ ।

ବନ୍ଧୁ—( ସବେଗେ ) କ'ଣ ?

ବନ୍ଧୁ ପତ୍ନୀ—ଦେଖ, ତମେ ତ ଅଜ ଗୁମାସ୍ତା, ତହସିଲଦାର ନୁହଁ ଯେ, ସେ ତୁମକୁ ଖାତର କରିବ—ତୁମର ଗାଲମାଡ଼ ସହିବ—ବେଠି ବେଗାର ଖଟିବ ?

ବନ୍ଧୁ—ମୋର ହୋଇ୍ ନାହିଁ, ବୁଝିଅ ବୋଉ । ଅଭ୍ୟାସଟା ବି ପରମ ଶୃଙ୍ଖଳ, ବୁଝ ତ !

( ଶିବା ପ୍ରବେଶ କଲା ଭାଇ କାନ୍ଦେଇ ଓ ବୁଲିକୁ କାଙ୍କରେ ଧରେଇ )

ବନ୍ଧୁ—ହଇରେ ବାପ, ତୋ ନାଁ ···

ଶିବା—ଶିବା, ଅ[illegible] ।

ବନ୍ଧୁ—ହିଁ, ଶିବା, ଶିବା ! ଅରେ ଶିବା, ମୂଲ ତ ପାଉଛୁ, ଆଜ ଶିବାଙ୍କୁ ମଙ୍ଗୁନୁ କାହିଁ ?

ଶିବା—ଆଜ୍ଞା ସା'ନ୍ତେ, ଲୁଚଟିକେ ପିବେ, କେତେ ବାଟ—ତା' ତ ଠିକ୍ କରି କହୁ ନାହାନ୍ତି ।

ବନ୍ଧୁ—ମୁଁ ବନ୍ଧୁ ଘରକୁ ଯାଉଚି, କେତେ ବାଟ ?—ଏଇ ବାଟ ବୋଲିତ ମନେ ହେଉଚି—କେତେ ବାଟ ?—ତା' ତା'—ଦେଖ୍, ଶିବା !

ଶିବା—ଆଜ୍ଞା ।

ବନ୍ଧୁ—ହିଁ, ଶିବା, ତତେ ଏଣୁ ତେଣୁ କହୁ ଉତ୍ତର ପାଉନି ନା । ତୋ ଖସି ।

ଶିବା—ଆଜ୍ଞା, ସାଅନ୍ତଙ୍କ ଘର ଦେଇ ଯିବା, ସେ ତ ଆନନ୍ଦର କଥା । ହେଲେ, ମୋ ଘରେ ମୁଁ ଏକୁଟିଆ—ଯଜ୍ଞ ବାପ୍ଯାଣୀଟାକୁ ଛାଡ଼ି ଅସିଚି, ତେଣୁଁରେ ଛୁଅ ଛୁଅ ପିଲ ଦ'ଟା—

ବନ୍ଧୁପତ୍ନୀ—ତୁ ତା' କଥା ଶୁଣ ନା ?—ତୁ ଗଲୁ ଶିବା—ପିଲାଛୁଅ କଥା, ନା ଅଛା । ଘର ଥୋ, ତୁ ଯା'—

ବନ୍ଧୁ—ତମେ ବ ଗଣ୍ଡିଲ ବାନ୍ଧିଚ, ଭୁଲିଅ-ବୋଉ—ଦ'ଟା ପାହାଡ଼ ଜା ପଡ଼ିଚ । ଘର ବରଣୀରୁ ଜାନି ବଡ଼ଟେ ଛାଡ଼ି ଅସିବାକୁ ମନ ବଳିଲା ନି, ତମର ।

ଶୋଭ—ବୋଉ, ତୁ ଚିନ୍ତା କର ନା, ମୁଁ ଏକାବେ ଦୁଇଟାଯାକ ବୋଝ ନେଇ ଯାଇ ପାରିବି ।

ଭୁଲ—ହିଁ, ତା' ସାଙ୍ଗେ ମତେ ବି—

ଶୋଭ—ଓହୋକଟୁ ନା, ଟୋକି—ଦେବ କୁମୁଟି ? ଦେଖୁଚୁ, ବୋଉ, ଚେଟିଣ ଖଉଣି ହେଉଚି—ମାଙ୍କଡ଼ପରି, ଶିବ ଭାଇର କାନ୍ଧ ଉପରେ ଚଢ଼ି ବସିଚି । ଓହୋ—

ଗଣ୍ଠିକଟା—ଇବ୍ବୁର ଗଣ୍ଠିଲ ଧ'ଟା । ମାଲ କେମିତକା ଦେଖାଯାଉ । ମାଲ ଯାହା ଥାଉ, ଖଲାସ କରବାକୁ ହବ ମୋତେ—ଅରେ ମୁଁ ଗଣ୍ଠି କଟା, ମୋ ବେଉସାକୁ ସମସ୍ତେ ନିନ୍ଦନ୍ତି, କିନ୍ତୁ କେହି ବୁଝନ୍ତି ନି—ଦଣ୍ଡା ବାଟରେ ଏହି ଚଟିଘର ହେଲ ଘାଟି ଜାଗା । ତମେ ଅସିଛ କେଉଁଠୁ ଜାଣେ ନା, ଯିବ କେଉଁଠିକି ଜାଣେ ନା । ତେବେ, ତୁମେ ବାଟ ଚାଲି ଚାଲି ଗଣ୍ଠିଲ ବୋହଂରେ ନଇଁ ପଡ଼ିଛ । ସେଥିରୁ ଦଣ୍ଡେ ନିସ୍ତୁଡ଼ି ପାଇବ ବୋଲି ଚଟି ଘରେ ଅଶ୍ରୟ ନେଇଛ—ଏ'କଥା ଠିକ୍ । ପୁଣି କାଲି ସକାଳେ ସେଇ ବୋହଂକୁ ନେଇ ବାଟ ଚାଲିବ ତ ? ମୁଁ ଯଦି ସେଇ ବୋହଂରୁ ତୁମକୁ ବିଲ୍‌କୁଲ୍ ମୁକ୍ତ କରିଦିଏ—କେତେ ଉଶ୍ୱାସରେ, ମନ ଖୁସିରେ ହଂଟ୍ ହଂଟ୍ ବାଟ ଚାଲି ଘର ଧରି ଯାଇବ, କହତ ? ଯେ ଯାହା କହୁ, ମୋର ବେଉସା ମୋତେ ଦେନାଏ—ସେହି ମୋର ଧର୍ମ ଓ କର୍ମ ବଳ ।

( ରଖୁଆଳ ବାଳକର ପ୍ରବେଶ )

ରଖୁଆଳ ବାଳକ—ଅରେ, ତୁହି ତ ମୋର ଅସଲ ଚେଲା ।

—ଗୀତ—

ଯାହା ଲାଗି ତୁ ଉଛୁଳ ଏତେ ଧାଇଁ ଅଧୀରେ
ସେ ଯେ ରେ ତୋର ସତଧନ ରହିଛନ୍ତି ସାଥିରେ;
ତୋର ଅନ୍ଧ-ଆଖି ଖୋଲିବ ଭାଇ
ପାଇବୁ ଯେବେ ଠାଁ ॥

( ଶିବାର ପ୍ରବେଶ )

ଶିବା—ତୁମେ ସେଠି କଥା ଗପୁ ଗପୁ ଏଠି ଆସି ହାଜର । କେଉଁ ଘଟରେ କି ସ୍ୱଭାବରେ ଯେ ଥାଅ,

ତୁମର ଅବଅଜ୍ଞା ପାଇବା ମୁଷ୍କିଲ । ଏତେ ଧନେ, ଅଳ୍ପ ଚେଷ୍ଟା କେଉଁଠି, କି ଅନାଦ କୁହତ ? ହଁ, ତୁମେ ମୋର ସ୍ନେହ ଭାଇ, ଶିବା ଅଗରୁ ତୁମିଅର ଦରର ଦେଉଯାଏଁ, ଭାଗ୍ୟ ଶକ୍ତ ବୋଝ—ବହୁ ସମାଳ ବାଟ ଗୁଲ୍ଲବ—

ରଘୁଅଲ—ଦରକାର ନାହିଁ, ଭାଇନା ।

ଶିବା—ତୁମେ କଠିଅ, 'ଗିର ବ ଝେଙ୍କପାର, ବସନ ବ ଗ୍ରେବ ଦରପାର ।

ରଘୁଅଲ—ତୁମକୁ ତ ଅଚ୍ଛପା ନାହିଁ କିଛି, ଭାଇନା । (ପଦ ବନ୍ଦନା ଭଲେ)

ଶିବା—ଏବେ ମେଲଣି ଦାଅ ସ୍ୱାଭ, ଉତ୍ତର ଦେଖି ତେଣେ ତୁମର ଭାଉଜ, ଯୋଗିନୀ ଠାକୁରାଣୀ—

ରଘୁଅଲ—ଶୀଘ୍ର ଶୀଘ୍ର, ଭାଇନା ! ଠାକୁରାଣୀଙ୍କର ଯୋଗିନୀ ମାୟାକୁ ମୋର ଭାଗ୍ୟ ଡର । ( ଶିବାର ପ୍ରସ୍ଥାନ )

( ବୁଲ୍ଲିର ପ୍ରବେଶ )

ବୁଲି—ବାଃ, ମାଧୋଇ ଭାଇ, ଏଠି ଏକୁଟିଆ ଖେଳୁଛ ତ ?

ରଘୁଅଲ—କ'ଣ କରିବ, ସାଙ୍ଗ ସୁଖ ତ ଦେଖୁ ନାହିଁ ।

ବୁଲି—ତୁମେ ମନେ କରିଚ, ମୁଁ ତମ ସଙ୍ଗେ ଖେଳିବ, ଖେଳ ଛଡ଼ା ମୋର ଯିମିତ ଦୁନିଆରେ କିଛି କାମ ନାହିଁ ।

ରଘୁଅଲ—ହଁ ହଁ, ତମେତ ବଡ଼ ବଡ଼ ଘରଣୀ ନୁହଁ ? ଘର କରଣା କରିବ କେତେବେଳେ, ଖେଳିବ କେତେବେଳେ—ତା' ମୋତେ ଜଣା ବୋଲି ତ ତୁମକୁ ଡାକ ନା ।

ବୁଲି— ଅଃ, ଦେବ ଯେ ଅଣି ଫୁଟିବ ।

ରଘୁଅଲ—ହଁ, ମରମ କଥା କହିଲେ, ଏମିତ ସମସ୍ତେ ଚିଡନ୍ତି ।

ଭୁଲି—ତମେ ଖାଲି ମରମ କଥା ଜାଣ ! ଅଚ୍ଛା, କହିଲ, ବାପା କଣ ଖୋଜୁଛନ୍ତି ?

ରଖୁଆଳ—ପର କଥା ।

ଭୁଲି—କୋଉ ?

ରଖୁଆଳ—ଘର କଥା—

ଭୁଲି—ଅପା ?

ରଖୁଆଳ—ବର କଥା ।

ଭୁଲି—ମୁଁ ?

ରଖୁଆଳ—ତମେ ? ପେଟର ସେଇ କଥାଟି ଅପାକୁ ପିଟେଇ କହିଲେ, ସେ ଯଦି ଏଥର ଚୁମୁଟି ଦିଏ, ତେବେ ତା'ର ସେଇ ହାତରେ, ଏମିତି ବତିଶ ଦାନ୍ତ ବସେଇ ଦେଇ, ଛୁ କରିଦେବ—( ଭୁଲିର ହାତକୁ କାମୁଡ଼ି ଦେଇ ଦୌଡ଼ି ପଳେଇଲା )

ଭୁଲି—( ଯନ୍ତ୍ରଣାରେ ) ମୋ ବୋଉ ଲୋ—

## ଦ୍ୱିତୀୟ ଦୃଶ୍ୟ

[ ପୂର୍ବ ଦୃଶ୍ୟର ସେହି ଜଗନ୍ନାଥ ସିଂହଙ୍କର ପାର୍ଶ୍ୱ-ବର୍ତ୍ତୀ ଗୋଟିଏ ଚଟିଘର । ସେହି ଚଟିଘର ସମ୍ମୁଖ ପିଣ୍ଡାରେ ବନ୍ଧୁ, ମହାନ୍ତି ଓ ବନ୍ଧୁ-ପତ୍ନୀ ଅଲଗା ଅଲଗା ହୋଇ ନିଦ୍ରା ଯାଉଥିଲେ । ଘରଭିତରେ ଶୋଭା ଓ ଭୁଲି ଶୋଇଥିଲେ ]

( ଗଣ୍ଡିକଣ୍ଠା ଚୁପ୍ ଚୁପ୍ ପ୍ରବେଶ କଲେ )

ଗଣ୍ଡିକଣ୍ଠା—ଚୁପ୍—ଚୁପ୍—ନିଶା ଝାଇଁ ଝାଇଁ—ଶିଆଳ ହୁକେ ହୁ—କୁକୁର ଭେଉ ଭେଉ—ଜୁଳଜୁଳା ଜୁଳୁ ଜୁଳୁ—ଚଢ଼ପଢ଼ ଚକ୍ ଚକ୍—ଚରଳୁଣି ଅଲଅ ଧପ୍ ଧପ୍—ସଇତାନ ଦାନ୍ତ ଛଡ଼ ମଡ଼—ମୁଁ ଗଣ୍ଡିକଣ୍ଠା—ଉଣ୍ଡିକଣ୍ଠା—ଏଇ ମୋର ସିନ୍ଧକାଠି—ଏଇ ନିଦମାଣ୍ଟି—ଚୁପ୍—ଚୁପ୍—

( ଥିର୍ ଥିର୍ ପାଦ ପକେଇ ଅଗେଇଲେ—ମାତ୍ର ହଠାତ୍ ଶବ୍ଦ ଶୁଣି ଚମକି ପଡ଼ି ଅନ୍ଧୁଆଳରେ ଛପି ରହିଲେ )

ଶୋଭି—( ନେପଥ୍ୟେ )—ମୋ ବୋଉ ଲେ !

ବନ୍ଧୁପତ୍ନୀ—କି ଲୋ, ଶୋଭି—କ'ଣ ହେଲା କି ?

ଶୋଭି—ଭୁଲ୍ ମୋ ହାତ କାମୁଡ଼ି ଦେଲା ।

ବନ୍ଧୁପତ୍ନୀ—(ବନ୍ଧୁ ପ୍ରତି ) ଶୁଣୁଛ—ଭିତରକୁ ଗଲା—ପିଲାଦ'ଟା ଡରୁଛନ୍ତି—ମୋତେ ବି କେମିତି ମାଡ଼ି ମାଡ଼ି ପଡ଼ୁଛି ... ... ନ', ଶୁଣୁଛ—( ପାଖକୁ ଉଠିଗଲେ )

ବନ୍ଧୁ—( ସ୍ୱପ୍ନ ଘୋରରେ ଉଠିବସି, କହିବାକୁ ଲାଗିଲେ, ଗୋଟାଏ ଅତର୍କିତ ଖିଆଲରେ )—
ସମାଳ—ସମାଳ—ବର୍ଷା ଝମ୍ ଝମ୍—ହୁ ହୁ ବତାସ—ବିଜୁଳି ଚମକ—ଘଡ଼ଘଡ଼ି ଶବଦ—ଆକାଶ ଭାଙ୍ଗିପଡ଼ୁଛି—ମେଦନୀ ଦୁଲୁକୁଚି—ଦରିଆ ମାଡ଼ିଆସୁଛି—ଭୁଲିଅ ବୋଉ—ଶୋଭି—ଭୁଲି—

ବନ୍ଧୁପତ୍ନୀ—( ହଲାଇ ) ଶୁଣୁଚ—ଶୁଣୁଚ—

ବନ୍ଧୁ—ଭୁଲିଅ ବୋଉ !—ପାଖକୁ ଆସ—ଆହୁରି ଲାଗି ବସ—

ବନ୍ଧୁପତ୍ନୀ—କ'ଣ ଏଣୁ ତେଣୁ ଗୁଡ଼ାଏ ବକୁଚ ?—ଗଲା, ଭିତରକୁ ଗଳିଲା ।

ବନ୍ଧୁ—ମୋର ଶୋଭି, ବୁଲ୍ ?
ବନ୍ଧୁପତ୍ନୀ—ଭିତରେ ଶୋଇଛନ୍ତି—
ବନ୍ଧୁ—ବେଶ୍ ବେଶ୍—ଅସ, କବାଟ ଖୋଲିଦିଅ ।

( ଉଭୟେ ଭିତରକୁ ଯାଇ କବାଟ ଖୋଲିଦେଲେ )

ଘଣ୍ଟିକଟା—( ବାହାରେ ଅସି ) ଏଥର ମୋର କାମ—ଅରେ ସେଇ ଜଳାକବାଟି ବାଟେ ଜିଦମାଟି—ତା'ପର ସିନ୍ଧୁକାଟ— ( ଗୃହଭିତରେ—ପୁଣି ନାସ୍ତ୍ରବ୍ଧତା କିଛିକ୍ଷଣ ବିରାଜ କରିବାକୁ ଲାଗିଲା । ସେଇ ନାସ୍ତ୍ରବ୍ଧତା ଭଙ୍ଗ କରି, ଗାଡ଼ିର ଘଣ୍ଟିଶବ୍ଦ ଶୁଣାଗଲା ଏବଂ ଗୋବିନ୍ଦ ଓ ନାରାୟଣ ପ୍ରବେଶ କଲେ )

ଗୋବିନ୍ଦ—ଏହିତ ଗୋଟିଏ ଛଟି ଘର—ଅଇଣ୍ଟା ।

( ଅଇଣ୍ଟାର ପ୍ରବେଶ )

ଅଇଣ୍ଟା—ଅଜ୍ଞ ।
ଗୋବିନ୍ଦ—ଏଇଠି ଗଣ୍ଡିଲ୍ ପକା ଥୋଇ ଦେଇ, ତୁ ଗାଡ଼ିରେ ଯାଇ ବ' ।
ଅଇଣ୍ଟା—( ସେଇ ଅଦେଶ ମୂତାବକ କାମ କରିବାକୁ ଲାଗିଲା )
ନାରାୟଣ—ନା, ଏଠି ନୁହେଁ, ଏଠି ସେମାନେ କାହାନ୍ତି ?
ଗୋବିନ୍ଦ—ସା'ନ୍ତେ, ଅପଣ ଏମିତି ଅସ୍ଥିର ହେଲେ ଚଳିବ ? ଜମିଦାର ଅପଣ, ଜମିଦାରୀ ସମ୍ଭାଳିବେ କେମିତି ?
ନାରାୟଣ—ତୁମେ ବୁଝି ପାରୁନା ଗୋବିନ୍ଦ—ମୁଁ ସ୍ଥିର ହେବି କେମିତି, ସେଥି ପାଇଁ ଅସ୍ଥିର । ଅରେ ଖାଲି ମୋର ବନ୍ଧୁ କବାଳ୍କୁ ଭେଟିବି—ନିଜ ମୁହଁରେ ନିଜ କଥା ଫିଟାଇ କହିବି । ଅହା । ଶୋଭା ଉଦ୍ଧବର ନିର୍ମଳ ଚରିତ୍ରରେ ଅଜ ଯେଉଁ ଦାଗ ଲାଗିଛି, ତାହା ମୋ ଯୋଗୁଁ ନୁହେଁ,— ସନ୍ତାନ ବାଞ୍ଛାଗ୍ରସ୍ତର କାରସାଦି ଯୋଗୁଁ, ଏଇତକ

ଶୁଣାଇ ଦେବ—ତା’ ପରେ ସେମାନେ ମୋତେ କ୍ଷମା କଲେ ଭଲ, ନ କଲେ ଭଲ—ତେବେ, ମୁଁ ନିଶ୍ଚିନ୍ତ ହେବ—ସ୍ଥିର ମନରେ ଫେରିଯିବ—ପ୍ରଜାସେବାରେ ସର୍ବସ୍ୱ ଢାଳି ଦେବ ।

ଗୋବନ୍ଦ—କେଉଁ ରାସ୍ତାଟା ଏଇ ରାତି ସରେ କଟେଇଦବା—ତା’ପରେ ରାତି ପାହିଲେ—

ନାରାୟଣ—ରାତି ପାହିବା ଯାଏ ଅପେକ୍ଷା କଲେ, ସେମାନଙ୍କୁ ଆଉ ପାଇବା, ଭାବୁଚ ? କେତେ ସମୟ ଗଲଣି, ସେମାନେ ରାତାରାତି ଆମ ଇଲାକା ପାର ହୋଇ, ଏତେ ବାଟ ଚାଲି ଆସିଛନ୍ତି ଯେ, ଯୋଜନେ ବାଟ ଚାଲି ସୁଦ୍ଧା ତାଙ୍କର ପଞ୍ଜା ପାଉ ନାହିଁ । ମୁହୂର୍ତ୍ତେ ଗୋଟାଏ ନଷ୍ଟ କରିବାର ବେଳ ନାହିଁ, ଗୋବନ୍ଦ—ତୁମେ ଚାଲ ।

ଗୋବନ୍ଦ—ଦେଖନ୍ତୁ, ସେମାନେ ଏଣେ ନ ଆସି ଅନ୍ୟ କେଉଁ ଆଡ଼େ ଯାଇପାରି ଥା’ନ୍ତି । ଯେ ଆମକୁ ଖବର ଦେଲା, ସେ ହୁଏତ ଭୁଲ କହୁଚି । ଏତେ ଗାଁ ଗଣ୍ଡା ପଶି, ପଚାରି ପଚାରି ଆସିଲୁ, କେହିତ କିଛି ସନ୍ଧାନ ବତେଇ ପାରୁ ନାହାନ୍ତି ।

ନାରାୟଣ—ମୋର ମନ କହୁଛି, ସେମାନେ ଏଣେ ଆସିଛନ୍ତି—ଏଇଟି କେଉଁଠି ଅଛନ୍ତି । ତୁମେ ଚାଲ, ଖୋଜି ଦେଖ—ଆଗମୁଣ୍ଡ ଗାଁରେ ଯଦି ରାତିଟା କଟାଇ ଥା’ନ୍ତି—

ଗୋବନ୍ଦ—ଆଜ୍ଞା, ଏ ମୁଣ୍ଡ କଟି ଚାଲେବି, ମୁଁ ଆପଣଙ୍କୁ ଆଉ ଟାଁ ଭିତରକୁ ନେଇ ଯିବ ନା । ନିଜ ଆଖିରେ ତ ଦେଖି ଆସିଲେ, ଟାଁ ଗଣ୍ଡାରେ କେମିତି ହଇଚା ଲାଗିଛି ! ‘ହରିବୋଲ’ ଧ୍ୱନି ପଡ଼ୁଚି, ରାସ୍ତା ଧୂଳି କଡ଼ରେ ମୁର୍ଦ୍ଦାର ଲୁଚ ଲୁଚ ।

ନାରାୟଣ—ଗୋବନ୍ଦ !

ଗୋବର୍ଦ୍ଧନ—ଡକୁଛନ୍ତି ?

ନାରାୟଣ—ହଇକାକୁ ଡରୁନାହୁଁ, ଗୋବର୍ଦ୍ଧନ । ହଇକାରେ ଯଦି ସେମାନେ— ( ଗଣ୍ଡିକଣ୍ଠାର ବେଗେ ପ୍ରବେଶ )

ଗଣ୍ଡିକଣ୍ଠା—ଆପଣ ପଳାନ୍ତୁ ପଳାନ୍ତୁ, ଏଠି ଆଉ ଦଣ୍ଡେ ରହିବେ ନା—ଘୋର ହଇଜା, ଘର ଝାଡାବାନ୍ତି ଲାଗିଛି ।

ଗୋବର୍ଦ୍ଧନ—ଆସନ୍ତୁ ବାହାରି, ସା'ନ୍ତେ ।—

ନାରାୟଣ—ଠିଅହୁଅ—ତୁମେ କିଏ ?

ଗଣ୍ଡିକଣ୍ଠା—ମୁଁ—ମୁଁ—ଏହି ଗାଁ ଚଉକିଆ, ସା'ନ୍ତେ ।

ନାରାୟଣ—ଗାଁ ଚଉକିଆ ? କହିପାରିବ, ତୁମେ ଚାରିଜଣ ବିଦେଶୀ ବାଟୋଇଙ୍କୁ ଏଣେ, କି ଗୁରିଜଣ—

ଗଣ୍ଡିକଣ୍ଠା—ଗୁରିଜଣ ?—ଦୁଇଜଣ ବୁଢ଼ା ବୁଢ଼ୀ—ଜଣେ ଯୁବା ବୟସୀ—ଅଉଜଣେ—

ନାରାୟଣ—ଛୋଟ ପିଲା ।

ଗଣ୍ଡିକଣ୍ଠା—ଆଜ୍ଞା—

ନାରାୟଣ—କାହାନ୍ତି ? କାହାନ୍ତି ସେମାନେ ? ଯଦି ଦେଖାଇ ଦେଇପାରିବ, ତେବେ—

ଗଣ୍ଡିକଣ୍ଠା—ପିଡାଇଁଅ ଦେବେ ? (ସ୍ୱଗତ) ବାବା ମୁଁ ଗୋବଧରିଙ୍କୁ ଜଳନ୍ତା ରଚ୍ଛେଁ । ( ପ୍ରକାଶ୍ୟ କଣ୍ଠରେ ) ହେଲେ, ଟିକିଏ ଆଗରୁ ଯଦି ଆସିଥା'ନ୍ତେ, ସା'ନ୍ତେ—

ନାରାୟଣ—କାହିଁକି ?

ଗଣ୍ଡିକଣ୍ଠା—ଏହିତ ସେମାନଙ୍କ ଲାଶ ଜଳେଇ, ଯାଉଚି ଗାଁ-ଦଫାଦାରକୁ ଖବର ଦବାକୁ ।

ନାରାୟଣ—ଗୋବର୍ଦ୍ଧନ— ( ଢଳି ପଡ଼ିଲେ )

( ଶୋଭ ହଠାତ୍ ଦ୍ୱାର ମେଲେଇ ଧାଇଁ ଆସିଲା )

ଶୋଭ—ନାରଣ ଭାଇ—          ( ବନ୍ଧୁପତ୍ନୀର ବେଗେ ପ୍ରବେଶ )

ବନ୍ଧୁପତ୍ନୀ—ଶୋଭ—

ଶୋଭ—ବୋଜ—          ( ବନ୍ଧୁପତ୍ନୀ ଉପରେ ଢଳି ପଡ଼ିଲେ )

ବନ୍ଧୁପତ୍ନୀ—ପାଗଲ ଭରିଦେବେ, ବାପ ହିଁଅ ଦୁଇଜଣ ।

( ଘରଭିତରକୁ ଶୋଭକୁ ନେଇଯାଇ ଦ୍ୱାର କିଳି ଦେଲେ )

ଚଣ୍ଡିକଣ୍ଠ—( ଗୁପ୍ତସ୍ଥାନରୁ ବାହାର ଆସି ) ହାଃ ହାଃ—ଚୁପ୍ ଚୁପ୍, ଗୋଟେ ତେଲରେ ଦୁ'ଟା ଚେଳି—( ପିଣ୍ଡାରେ ଥୁଆ ହୋଇଥିବା ଚଣ୍ଡୀଙ୍କୁ ଟେକିପର ହାଣ୍ଡିଏ କା ଭଳି । ବାହ୍ରେ, ଏ କି ପାଣି ପବନ । ଏ କି ବିଜୁଳି ଘଡ଼ଘଡ଼ି । ମରିଗଲି, ମରିଗଲି—

[ ବିଜୁଳି ଘଡ଼ଘଡ଼ି । ପାଣି ପବନ । ଚଣ୍ଡିକଣ୍ଠ ପଳାଇଲେ । ଚଣ୍ଡିକା ରହିଗଲା । ]

## ତୃତୀୟ ଦୃଶ୍ୟ

[ ପୂର୍ବଦୃଶ୍ୟର ପ୍ରଳୟ ଝଞ୍ଜା ବର୍ତ୍ତମାନ ସୁଦ୍ଧା ଥମିନାହିଁ—ସେଥିରେ ଯେମିତି ଛନ୍ନଛଡ଼ା ଭଳି ଓ ଛନ୍ନଦାସ ହୋଇ ବନ୍ଧୁମହାନ୍ତି ଉନ୍ମାଦ ଭାବରେ ପ୍ରବେଶ କଲେ ]

ବନ୍ଧ—ମୁଁ ସ୍ୱପ୍ନରେ ଝଞ୍ଜାର ଆଭାସ ପାଇଥିଲି । ଆଖିରେ ଝଞ୍ଜା ଦେଖିଲି । ମନ ଭିତରେ ଅଇଛଟା ଝଞ୍ଜା ଖେଳି ଯାଉଛି । ବନ୍ଧୁ ! ବନ୍ଧୁ ! ମୁଁ ଗୋଟାଏ ଆବେଗରେ—ଗୋଟାଏ

ଶିଅଲଲେ 'ବନ୍ଧୁ' ପଦ ଉଚ୍ଚାରଣ କରିଥିଲି । ହେଲେ, ଅସ୍ତିତ୍ୱରେ ସନ୍ଦେହ ଥିଲା । ବର୍ତ୍ତମାନ ବିଶ୍ୱାସ ହେଉଛି, ତୁମ୍ଭେ ଅଛ । ମାତ୍ର, ତୁମେ କିଏ—କେଉଁଠି ଥାଅ—ତୁମ ଘରକୁ କେଉଁ ବାଟ, ତା' ତ ଜାଣେ ନା ? 'ବନ୍ଧୁ' ବୋଲି କହି, ତୁମର ଘରକୁ ଯିବା ବାହାନାରେ, ମୋର ପିଲାକୁଟୁମ୍ବଙ୍କୁ ଘରୁ କାଢ଼ିଲି ଆଣିଛି, ସେମାନେ କେତେ ସଉଗରେ ବନ୍ଧୁଘର ସୁଖ ଭୁଞ୍ଜିବେ ବୋଲି ମୋ ସାଥେ ସାଥେ, ବାଟ ଅବାଟ ନ ମାନି ଧାଇଁଛନ୍ତି । ଏବେ ତୁମର ସନ୍ଧାନ ବତାଇ ଦିଅ, ବନ୍ଧୁ । ବନ୍ଧୁ-ଭାବ ବହି ମୋ' ମନରେ, ତୁମର ଅସ୍ତିତ୍ୱର ବିଶ୍ୱାସ ଜନ୍ମାଇ ଦେଇଛ, ଆଜି ସେଇ ଭାବକୁ ମୂଳକରି, ମୋତେ ତୁମର ଘରବାଟ ଚହ୍ନାଇ ଦେବ ନି, ବନ୍ଧୁ ? ଏ ଝଞ୍ଜା ବାତରୁ ରକ୍ଷା କର, ବନ୍ଧୁ । ( ଆଖିବୁଜି ଗାଇଲେ )

—ଗୀତ—

ତୁମେ ମୋ ବନ୍ଧୁ ଯଦିଚ ଚହ୍ନେ ନା, ଚହ୍ନେ ନା,
ଅରୂପ ସ୍ୱରୂପ ଅବା ଜାଣେ ନା; ଜାଣେ ନା ।
ଜାଣିଛି ଏତିକି ଅହେ, ମୋ ପିଅର
ଅଛ ତୁମେ କାହିଁ, ଅଛି ତୁମ ଘର ।
ଝଞ୍ଜାରେ ଆଖି ମୁଁ ଫେଇ ପାରେନା ପାରେ ନା,
ବିଚ୍ଛେଦ ତଥାପି ତବ ସହେନା ସହେ ନା ।

[ ମଟରର ବଂଶୀସ୍ୱନ ଶୁଣାଗଲା । ମାଧୋଇ ଧୀରେ ଧୀରେ ଆଖି ହାତ ଧରିଲା । ତା'ର ଛିଣ୍ଡା ପଇତଣି—କାନ୍ଧରେ

ଗୋଟିଏ ବାଉଁଶ—ଅଗ ମୁଣ୍ଡରେ ଗୋଟିଏ ଗ୍ଲେଟ ଭୁକୁଲା ବନ୍ଧା । ]

ମାଧୋଇ—ବାଃ, ବେଶ୍ ଲୋକତ । ଆମକୁ ଛାଡ଼ି ଚାଲି ଦେଇ, ଏଠି ଅସି ଜାକର । ବନ୍ଧୁ ଘରକୁ ଯିବାକୁ ଏତେ ଉଚ୍ଛନ୍ନ ଯେ···
( ବନ୍ଧୁପତ୍ନୀ, ଶୋଭ, ଭୁଲ ପ୍ରବେଶ କଲେ । ସମସ୍ତଙ୍କ ଲୁଗା ପଟା ଛିଣ୍ଡା ଧୋତିଶ । )

ବନ୍ଧୁପତ୍ନୀ—ପିଲାଏ ମଲେ କି ହଜିଲେ, ସେ ଖବର ନେବାକୁ ତର ସହୁଲା ନା ।

ବନ୍ଧୁ—ଭୁଲିଅ-ବୋଉ—

ବନ୍ଧୁପତ୍ନୀ—ଗ୍ଲଲ, ଠିଅ ହୋଇ ଲାଭ କ'ଣ ?

ବନ୍ଧୁ—ବାଟ ?···

ମାଧୋଇ—ଅଚ୍ଛା ଲୋକ । ମୁଁ କଢ଼େଇ ଦେବି ହେ ।

ବନ୍ଧୁ—ତୁ ଚିଗୁ ଅମ ସାଥିରେ ?

ମାଧୋଇ—ଦେଖୁଛ ତ, ମା—

ଭୁଲି—ଗ୍ଲଲ ମ, ବାପା—

ବନ୍ଧୁ—ହେଲେ, ଭୁଲିଅ ବୋଉ, ଏଇ କାଙ୍ଗାଳ ବେଶରେ—

ବନ୍ଧୁପତ୍ନୀ—କାଙ୍ଗାଳ ହୋଇଛ ବୋଲିତ ଅଜ ବନ୍ଧୁ ଘରକୁ ଯାଉଚ—ବନ୍ଧୁଙ୍କୁ ଏତେଦିନେ ମନେ ପଡ଼ିଚ ।

ବନ୍ଧୁ—ମୋ ପାଇଁ ନୁହଁ—ତୁମ ତିନିଜଣଙ୍କ ପାଇଁ ।

ବନ୍ଧୁପତ୍ନୀ—ଅଉ, ଏଇ ପରପିଲାଟି ପାଇଁ ?

ମାଧୋଇ—ମତେ ପର କରିଦେଲଣି ତ ? ତେବେ, ତୁମର ଭୁକୁଲା ଭୁକୁଲ, ଚଣ୍ଡୋଲପଣ ଏଇଠି ରହିଲା । ମୁଁ ଗ୍ଲଲି ।

ଭୁଲି—ନା, ମାଧୋଇ ଭାଇ । ତୁମକୁ ମୁଁ କେବେ ଛାଡ଼ିବି ନା । ହାତ ବାମୁଣ୍ଡ ଦେଇ ପଳେଇଥିଲ, ଏଥର ହାତ ବାମୁଣ୍ଡ ଧରିବି । ହାଁ ବାପା, କଥା ଶୁଣ ନା, ତୁମେ ଗ୍ଲଲ ।

ବନ୍ଧୁ—ତେବେ—( ଗୁରୁଅଙ୍କୁ ସ୍ୱପ୍ନ କ'ଣ ଗ୍ରବିବାକୁ ଲାଗିଲେ )

ବନ୍ଧୁପତ୍ନୀ—ଦେଖୁଛ କ'ଣ ? ଝିଙ୍କା ବତାସ ଲାଗିନି ? ଏମିତ ସ୍ୱପ୍ନ ଦେଖନ୍ତି ମଣିଷ ? ସ୍ୱା ଅଟେ ସ୍ୱପ୍ନ ତୁମେ କେବେ ଦେଖିଚ ବୋଲିଛ, ମୋର ମନେ ହୁଏ ନା ।

ଶୋଭ—ଅସ୍ତୁର ତୁମେ ଗ୍ରବନା କରନା, ବାପା । ଅମେ ଯା' କନ୍ଥ ଘର ପାଖୁ ଅଣିଥିଲୁ, ସବୁ ମୁଁ ସଜଡ଼ା ସଜାଡ଼ି କରିଦେଇଛୁ, ଅଜ ମାଧୋଇ ତାକୁ ବାନ୍ଧ ବୁଜ ସେହୁ ଗଣ୍ଠିଲିଟି କରୁଛୁ । ହଁ, ତୁମର ଲେଖନୀ ନିଅ ବାପା, ଅଣ୍ଟାରୁ ଖସି ପଡ଼ିଥିଲା ।

ବନ୍ଧୁ—ତୋ'ର ପାଖରେ ଥାଉ । ତୁ ତା'କୁ ଏଣିକି ଜମାକରି ରଖ, ମା ! ଏଇ କୋଟିକ ଆମର ପରିଚୟ, ମହାନ୍ତି ଘରର ସମ୍ବଳ । ( ଗୋଟାଏ ଚନ୍ଦ୍ରାରେ ଭାସି ଯାଉଥିଲେ, ମାଝ ଅପଣାକୁ ରୋକି ନେଇ ) ହଁ, ମୁଁ ଗଣ୍ଠିଲଟା ମୁଣ୍ଡାଏ । ଅଚ୍ଛା ଏତେ ଏତେ ବୁଇଟା ଗଣ୍ଠିଲ, ଏତେ ଗ୍ଲେଟ ହେଲା କେମିତ ?

ମାଧୋଇ—ଏଥିରେ ଅଜ ଅଶ୍ଚର୍ଯ୍ୟ କଣ ? ଚଉଦକୋଟି ଭୁବନକୁ ଭାବଗ୍ରାହୀ ଯେତେବେଳେ ଚୂଳିକଣାପରି ନଖରେ ଧାରଣ କରି ପାରନ୍ତି—

ବନ୍ଧୁ—( ହସି ) ସେତେବେଳେ ଏଇ ମାଧୋଇ ଭଳି ଟିକି ପିଲଟି, ପ୍ରକାଣ୍ଡ ବୁଇଟା ଗଣ୍ଠିଲକୁ ଯେ, ଗ୍ଲେଟ ବଳଟେ ଗଣ୍ଠିଲ କରି ଦେବ, ଅଶ୍ଚର୍ଯ୍ୟ କ'ଣ ? ( ଉଠାଇବାକୁ ଚେଷ୍ଟାକଲେ—କିନ୍ତୁ ପାରିଲେ ନାହିଁ ) ଉଃ; ଏତେ ଓଜନ ।

ମାଧୋଇ—ଥାଉ ଥାଉ ହେ, ଗଉଡ଼ ପିଲର କାମ, ତୁମେ ଯେବେ କରନ୍ତ—

ବନ୍ଧୁ—ତୁ କିଏ ?

ମାଧୋଇ—ଏତକ ବ ମଫସଲରେ ପଶୁ ନା—ଗଣ୍ଡିଲଟି ଦେଖିବାକୁ ଶ୍ରେଷ୍ଠ, ହେଲେ ମାଲ ପତ୍ରର ଓଜନ ଯିବ କୁଆଡ଼େ ?

ବନ୍ଧୁ—ତୁ—

ମାଧୋଇ—ଅଃ, ଅସିବ ତ ଅସ ହେ, ନାଇଁ ତ ମୁଁ ତୁମର ଲୁଗା ପଟା, ସବୁ କଣ୍ଟ ନେଇ ଚାଲିଲି ।

ବୁଲି—ମାଧୋଇ ଭାଇ, ଚାଲ ତ—ତୁମେ ନ ଚାଲିଲେ କେହୁ ବାଟ ଚାଲିବେ ନି—

ମାଧୋଇ—ତୁମେ ଗାଇଲେ ଯିନା ମୁଁ ଚାଲିବ ?

ବୁଲି—ତୁମେ ସୁର ମିଳେଇବ ତ ?

ମାଧୋଇ—ବେସୁରା ହେଲେ, ମିଳେଇବା କେମିତ ?

ବୁଲି—ବେଶ୍, ମୋ ହାତଧର—

—ଗୀତ—

ବୁଲି—ତୁମର ସଙ୍ଗୀତ ମୁହିଁ—              ଗାଉଛି ତୁମର ପାଇଁ
ତୁମର ଭାଷା ଓ ସୁରେ
ମାଧୋଇ—ଭୁବନ ପବନ ନାଚ          ମୋ ସଙ୍ଗୀତେ ଥାଏ ମାତ
ପ୍ରେମର ଧାରା ଝରେ ।
ଜ୍ୟାର ଶିଶିର ହସେ,
ସେ ସଙ୍ଗୀତ ଭାସେ
ସଞ୍ଜ ପ୍ରଦୀପ ଜଳେ          ତା'ରେଣ ଚରଣେ,
ବୁଲି—          ତୁମେ ଅଛ ମୋହପାଇଁ
ମାଧୋଇ—          ତୁମ ଲାଗି ମୁହିଁ ଘୁରେ ।

[ ଗାଇ ଗାଇ ଚାଲିଲେ—ଅପର ସମସ୍ତେ ଅନୁସରଣ କଲେ ]

# ଚତୁର୍ଥ ଦୃଶ୍ୟ

[ ବଡ଼ ଦେଉଳର ଦକ୍ଷିଣ ପାର୍ଶ୍ୱ ଧେଜନଳା ଚତ୍ତରର ଦୃଶ୍ୟ । ପୂର୍ବ ଦୃଶ୍ୟର ପରିଶେଷରେ ମାଧୋଇ ଓ ବୁଲି ଯେଉଁ ଗୀତ ଗାଉଥିଲେ, ତା'ର ରେଶ ମିଳାଇ ଯିବା ସଙ୍ଗେ ସଙ୍ଗେ ଜଣେ ତୀର୍ଥଯାତ୍ରୀର ଭଜନ ଗୀତଶୁଣା ଗଲା । ଝଞ୍ଜଣୀ ବଜାଇ ଗାଉଥିଲା । ବନ୍ଧୁ ଓ ବନ୍ଧୁପତ୍ନୀ ପ୍ରବେଶ କଲେ । ବନ୍ଧୁର ମନୋଭାବରୁ ବୁଝାଗଲା, ସେ ଯେମିତି ସେହି ସଙ୍ଗୀତରୁ ଗୋଟାଏ ନୂତନ ସଙ୍କେତ ପାଇଛି । ]

ଯାତ୍ରୀ— —ଗୀତ—

ଭାଇମନ ରେ, କାହିଁ ହେଉଛୁ ଧନ୍ଦ ?
ଜଗବନ୍ଧୁ ନାମ ଘୋଷୁଥା' ମନରେ ଛିଡ଼ିଯିବ ଘୋର ବିଷମ ବନ୍ଧ ।
ଜାଣି ଶୁଣି ଅଜଣା ହୋଇ ମରୁ କପା ଲାଗି ଅନ୍ଧ
ଜୀବ ଗଲେ ଆଉ ନ ଗୁହିଁବେ ଫେରି,
କାୟାର ମାୟାକୁ ଯିବେଟି ବାନ୍ଧ ।
ଅସାର ଏ ଖାଲୁ ସଂସାର
ସବୁ ମିଛ ମାୟା ବେଭାର
ସବୁ ପଛେ ଥୋଇ, ଏକଧ୍ୟାନ ହୋଇ,
ସେହି ପଦ ମନେ ଧରି ତୁ ଛନ୍ଦ ।

ବନ୍ଧୁ—"ଜଗବନ୍ଧୁ", "ଜଗବନ୍ଧୁ"—ମୋର ବନ୍ଧୁର ନାମ "ଜଗବନ୍ଧୁ" ।

ବନ୍ଧୁପତ୍ନୀ—ନାମ ଜାଣିଲ ତ, ଅଉ ଉତ୍ତର କାହିଁ ? ଦେଖି ଶୁଣି ଏଥର ବାଟ ଗ୍ରହ ।

ବନ୍ଧୁ—ଏଇତ ମୋର ବନ୍ଧୁର ନଅର । ଦେଖିଲ, କେତେ କୋଠା ବାଡ଼ି, କେତେ ପାଇକ ବେରୁଅ, କେତେ ପ୍ରଜାପାଟକ ।

ବନ୍ଧୁପତ୍ନୀ—ଭଲକଥା । ଏବେ ବନ୍ଧୁଙ୍କ ସଙ୍ଗେ ଯାଇ ଦେଖା କର ।

ବନ୍ଧୁ—କେମିତି କଥା କହୁଚ, ଭୁଲିଅ ବୋଉ ?—ବନ୍ଧୁ ମୋର ରାଜାଲୋକ, ଦୁଆରେ ବେରୁଅ ଜଗିଛନ୍ତି, ଭୁଙ୍ଗି ସଙ୍ଗୋଳ ଧରିଛନ୍ତି, ପେଲାପଣ କରି ଗଲେ, ମାଡ଼ରେ ଜୀବନ ଉଡ଼ିଯାଉଛି—ମୁଁ ପେଲି ପଶି ଯିବି ?

ବନ୍ଧୁପତ୍ନୀ—ବନ୍ଧୁ ଘରେ ବନ୍ଧୁ ପଶିବ, ଏତେ ଡର କାହିଁ ମ ?

ବନ୍ଧୁ—ଜୀବନକୁ ଡର ନୁହେଁ, ଭୁଲିଅ ବୋଉ । ଡର ଭୟ ମୋର ବନ୍ଧୁର ମାନ ମର୍ଯ୍ୟାଦାକୁ ।

ବନ୍ଧୁପତ୍ନୀ—ହେଲା, ତାହା ହାତରେ ତେବେ ଖବର ପଠେଇ ଦିଅ ।

ବନ୍ଧୁ—କ'ଣ, ମୁଁ ଖବର ପଠେଇବି ବନ୍ଧୁ ପାଖକୁ ?

ବନ୍ଧୁପତ୍ନୀ—ତେବେ କୁହ, ନିଜର ମାନ ମହତ ସରିଯିବ ।

ବନ୍ଧୁ—ଅବଶ୍ୟ । ମୁଁ ବନ୍ଧୁ ମହାନ୍ତି—ଦୀନ, କାଙ୍ଗାଳ, ଅରକ୍ଷିତ ହେଲି ବୋଲି, ମୋର କରଣ-ମର୍ଯ୍ୟାଦା କେଉଁଠି ଉଡ଼ିଗଲା ? ହଇ ହେ, ମୋର ଯଦି ସେମିତି ମର୍ଯ୍ୟାଦା ନ ଥାନ୍ତା, ତେବେ ରାଜା ମୋର ବନ୍ଧୁ ହୁଅନ୍ତେ କିପରି ?

ବନ୍ଧୁପତ୍ନୀ—ହେଲେ, ଖବର ନ ପଠାଇଲେ, ଶୂନ୍ୟରୁ ତ ଆଉ ବନ୍ଧୁ ବନ୍ଧୁର ଖବର ପାଇ ପାରିବେ ନି ?

ବନ୍ଧୁ—କାହିଁକି ନ ପାରିବେ ? ଶୂନ୍ୟରୁ ମୋର ବନ୍ଧୁ ଅଛୁ ବୋଲି, ମୁଁ ଜାଣିଲି କେମିତି ? ଶୂନ୍ୟେ ଶୂନ୍ୟେ ମୋ ବନ୍ଧୁ ଘର

ପାଖକୁ ମୁଁ ଧାଇଁ ଅସିଲି କେମିତି ? ଶୂନ୍ୟରୁ ମୋର ବନ୍ଧୁର
ନାମ 'ଜଗବନ୍ଧୁ' ବୋଲି ଜାଣିଲି କେମିତି ?

ବନ୍ଧୁପତ୍ନୀ—କେଣ୍ଟେବେ ଶୂନ୍ୟକୁ ଗୁହିଁ ଏଠାରେ ଠିଆ ହୋଇଥାଅ

ବନ୍ଧୁ—ଠିଆ ହେବ କାହିଁକି ? ବସିବା ।

( ଫେଜନଲା ପାଖରେ ଦମ୍ଭ ଧରି ବସିଲେ )

ବନ୍ଧୁପତ୍ନୀ—ମ, ଏଠି ଆଉ ଗୋଟୁ ଗୁଡ଼ାକ ବୁଲୁଚନ୍ତି—ଫେଜ
ଚୋରଣି, ଅଇଁଠା ଶଙ୍କୁଡ଼ ଗୁରିଅଡ଼େ ।

ବନ୍ଧୁ—ବୁଲୁଅ ବୋଉ । ତମର ସ୍ନେହମଣି ମାଧୋଇ କଥା କ'ଣ
ପାଶୋରି ଗଲ ?—ବାଟରେ ଅସୁ ଆସୁ ସେ କହୁଥିଲା ନା
—ଗାଈ ଗୋରୁ ମୋ ବନ୍ଧୁର ଭାରି ପିଅର—ଫେଜନଲା
ପାଖେ ବସିବାକୁ ସେ ଭାରି ସୁଖ ପା'ନ୍ତି ?

( ବୁଲୁ ଓ ଶୋଭର ପ୍ରବେଶ )

ବୁଲୁ—ବୋଉ । ମାଧୋଇଭାଇ କୁ ।

ବନ୍ଧୁପତ୍ନୀ—କୁ' ?

ବୁଲୁ—କେଳୁଣୀ ନାଚ ହେଉଥିଲା—ଅମେ ଦେଖୁଥିଲୁ – କେତେ-
ବେଳେ ଖଞ୍ଜରେ ଖସିଯାଇ, ଭଡ଼ ଭିତରେ ପଶି, ପିଠିମାରି
ଡାକ, ଠାରି କହୁଲା—ବୁଲୁ ମୋତେ ଧ', ନାହିଁତ, କୁ—

ବନ୍ଧୁ—ଭଡ଼ ଭିତରେ ଦଳି ମଞ୍ଜି ହୋଇ ଯାଇନା ତ ପିଲାଟି ?

ବନ୍ଧୁପତ୍ନୀ—ମୁଁ ଯାଏ, ତୁମେ ଥିବା ହୋଇ ପଡ଼ିତ ।

( ଯିବାର ଉପକ୍ରମ )

ବନ୍ଧୁ—ନା, ନା— ( ଗୁଳିଗଲେ . )

ବୁଲୁ—ମୁଁ ଯେତେ କହୁଛି ଅପାକୁ, ଧରି ଧର—ଅପା ଶୁଣିବ
କାହିଁକି ?

ଶୋଭ—ତୁ ଧରିଲୁ ନି ଟୋକା ?

ବୁଲୁ—ମେତେ ଯଦି ସେମିତି କାମୁଡ଼ି ଦଅନ୍ତା—ଇହୁ, ହୁ, ହୁ,—

( ପୂର୍ବ କାମୁଡ଼ାଟା ଯେମିତି ଅନୁଭବ କଲା )

ଶୋଭ—ମାଙ୍କଡଟା ଖେଳେଇ ହବ—ଶଢ଼େଇ ମାରବ, ମୁଁ ତାକୁ ଧରବ ?

ଭୁଲ—କଅଣ ସେ ତୋତେ ଶଢ଼ାଏ ?—ହଉ, କଥା କହେ—

ଶୋଭ—ଭୁଲ ! ( ଚିମୁଟି ଦେଲା )

ଭୁଲ—ମୋ ବୋଉ ଲୋ—ଙଁ ଙଁ ଙଁ ।

ବନ୍ଧୁପତ୍ନୀ—ଶୋଭ—

ଭୁଲ—ବେଶ, ମୁଁ ବି ଖେଳେଇ ହେବି—ଶଢ଼େଇବି—'ମେଘ ବରଷିଲା ଟୁପୁରୁ ଟୁପୁରୁ ମାଣ୍ଡିଆ ହେଲା ଭଜା'—

ଶୋଭ—ବୋଉ, ଦେଖୁଚୁ—ମୁଁ ଏଥର ଯୋମଣି ଧାର ଭାଙ୍ଗିଦେବି

ଭୁଲ—ବୋଉ—(ବୋଉର ଅଞ୍ଚଳ ଧରି ଅଶ୍ରୁ ଲୋଡ଼ିଲା )

ବନ୍ଧୁପତ୍ନୀ—ଅଲୋ, ଅମର ଗଣ୍ଡିଲଟା କାହିଁ ?

ଶୋଭ—ମା'ଧୋଇ ପାଖରେ—ଦେଇ ଯାଉ ନା ?

ବନ୍ଧୁପତ୍ନୀ—ଭଲ କଥା, ଖାଇବ କ'ଣ ? ଚୁଡ଼ା ଗୁଡ଼ଳ ବି ସେହି ଗଣ୍ଡିଲରେ ।

ଶୋଭ—ବାପାର ଲେଖନଟା ବି—ମୁଁ ଯେବେ ନାହିଁ ନାହିଁ କହୁଚି, ମୋ'ଠୁ କାଢ଼ି ନେଇ, ସେଇଥିରେ···

ବନ୍ଧୁପତ୍ନୀ—ଲେଖନଟା ଗଲା ତୁଲ୍ଲିକି—ଏବେ ଗିଳିବ କ'ଣ ?

ଭୁଲ—ଭୁଖ ଲାଗିଲା, ବୋଉ !

ବନ୍ଧୁପତ୍ନୀ—ମୋତେ ଗିଳ ।

ଶୋଭ—ମୋର ବି ଭୋକ୍ ହେଲା ନା । ଗଣ୍ଡିଲଟା ଡାଟ୍ଟୁଁ···

ଭୁଲ—ଭୋକ୍ ହବ କିମିତି ?—'ଯାଜପୁରେ ବନ୍ଧିଲେ ମୋ ରଜା, ତେଲଙ୍ଗି ବାଇଦ ବଜା'—

ବନ୍ଧୁପତ୍ନୀ—'ଯାଜପୁରେ ବନ୍ଧିଲେ ମୋ ରଜା' ।

( ଭୁଲକୁ ଗୁନ୍ଦାଟିଏ ଦେଲେ )

ବୁଲୁ—ବାପା ! ବାପା ଲେ—( କାନ୍ଦ କାନ୍ଦ ଗୁଲୁଗଳ )

ବଡ଼ ପତ୍ନୀ—ଶୋଭ — ଏଇଟା କ'ଣ ତୋର ପେଟର କଥା ? ଓଃ, ଯୋଉଁ ପାଷାଣ୍ଡ ତୋର ଏତେ ସବୁ କଲା, ମହାନ୍ତ କୁଳରେ କାଳି ଲେପି ଦେଲା, ଅମଳୁ ଦାଣ୍ଡର ଭିକାରି କରି ଛାଡ଼ିଲା—ତା'ର କଥା ତୁ ଅନୁଖ ଭାଳି ମରୁଚୁ ? ବୁଝିଲି, ତୋର ଯେବେ ଖରାପ ମତଲବ ନ ଥିଲା, ତେବେ ସେ ଦିନ ସେ ବହପ ପାଇଲା କେମିତି, ତତେ—

ଶୋଭ—ବୋଉ ! ବୋଉ ! ଏ' କଥା ଶୁଣାଇବା ଆଗରୁ ମୋତେ କାହିଁକି ଜହର ଖୋଇ ମାରି ନ ଦେଲୁ ?—ବେକରେ ଦଉଡ଼ି ଦେଇ ମରିବାକୁ ନ କହିଲୁ ?—ଆତ୍ମହତ୍ୟା ମହାପାପ, ଏ କଥା ଆଗରୁ କାହିଁକି ଶୁଣାଇଥିଲୁ ?— ବୁଝିଲି, ତୋ ମୁହଁରୁ ଦିନେ ଅପବାଦ କଥା ଶୁଣିବି, ସେଇଥିପାଇଁ ବଞ୍ଚିକି ରହିଥିଲି ।

ବଡ଼ ପତ୍ନୀ—ଅଲୋ, ନା ଲୋ ନା—ତୁ କାଏ, କାରଣ କାଏ ?— ସେଇଟି ଦିନୁ ତା'ର ମା ମରିଚି—ମୁଁ ତାକୁ ବଢ଼େଇଚି, କୁନ୍ଦେଇଚି—ଏଡ଼ା ସଙ୍ଗେ ତୁମେ ଦୁହେଁ ଖେଳିଚ, ବୁଲିଚ, ପାଠ ପଢ଼ିଚ—ଏଡ଼ା ଥାଳରେ ତମ ଦୁହିଁଙ୍କ ଖାଇଚି, ପିଇଚି—

ଶୋଭ—ବୋଉ—

ବଡ଼ ପତ୍ନୀ—ହେଲେ, ଶୋଭ ! ସେ ଅମଣିଷ ହେଲା ବୋଲି ତୁ କି ସେଇଆ ହବୁ ? ଭାଇଙ୍କ ଭଉଣୀ ଯୋଉଁ ଆଖିରେ ଦେଖେ, ଭାଇର ମଙ୍ଗଳ ଭଉଣୀ ଯିମିତି ମନାସେ, ସେମିତି ଭାବ— ସଫା ମନରେ ତା' କଥା ଦିଅଁଙ୍କୁ ଜଣା ।

ଶୋଭ—ବୋଉ, ତା' କ'ଣ ମୁଁ କହୁ ନି ?

ବନ୍ଧୁପତ୍ନୀ—ମନକୁ ପଗ୍ଷର । ତୋ ମନରେ ଯେବେ କିଛି ମଳି ଧୂଳି ନାହିଁ, ତେବେ ପର କଥାରେ, ପର ମୁହଁରୁ ଝାଡୁଲ ଶୁଣି, ତୁ ଏତେ ଚଳୁଛୁ କିଆଁ ? ଥଙ୍କେ ଝିଅ । ସଭିଙ୍କର ନିନ୍ଦା ତୁଚ୍ଛିକୁ ହସି ଉଡ଼େଇଦେଇ, ଅପଣା କାମରେ ଠିକ୍ ରହିବା ହେଉଚି ଅମର କାମ । ଛି, କାନ୍ଦ ନା—ମା' କ'ଣ ପୁଅ ଝିଅର ଖୁଣ ବାରେ ନା ? ତୁ ପସ୍ତ ମୋ ପରଣ-ପଥର —ତୋତେ ଛେଇ ଉଜ୍ଜ୍ୱଳ କରିବ ନି ? ତୋର ସ୍ପରଶରେ ଯେ, ତୋର ନାରଣ ଭଲ ସୁନା ହେଇଯିବ ।

( ଲୁହ ପୋଛି ଦେଲେ )

ଶୋଭା—ବୋଉ ! ମତେ ଆଶୀର୍ବାଦ କର—ମୋ'ର ଯା' କିଛି ମଳି ଧୂଳି ଅଛି, ତା' ଏଇ ଲୁହରେ ଯିମିତି ଧୋଇ ପୋଛି ହୋଇଯାଏ ।

ବନ୍ଧୁପତ୍ନୀ—ଠାକୁରେ କରନ୍ତୁ, ତୋର ସବୁ କିଛି ଅଲେଇ ବେଲେଇ, ମୁଁ ଯିମିତି ଝାଡ଼ିଝୁଡ଼ି ନିଏଁ ।

ଶୋଭା—ବୋଉ । ବୋଉ । ( ଚରଣ ଧୂଳି ନେଲେ )

( ବୁଲୁର ବେଗେ ପ୍ରବେଶ )

ବୁଲୁ—ବଉ । ଭାରି ଭୋକ । ଆଉ ସମ୍ଭାଳି ପାରୁ ନି ।

( ଭିତରେ ଶୋଇ ପଡ଼ିଲେ )

ଶୋଭା—ମାଡ଼ିଧାଇ ଗଲେ କୁଆଡ଼େ । ( ଗୃଳିଗଲେ )

( ବିପର୍ଯ୍ୟସ୍ତ ଦଶରେ ବନ୍ଧୁମହାନ୍ତିଙ୍କର ପ୍ରବେଶ )

ବନ୍ଧୁ—ପାଇଲି ନି, ପିଲାଟିକୁ—ଖୋଜି ଖୋଜି ନାକେଦମ୍— କେହି କହି ପାରିଲେ ନି ତା' କଥା । ଶେଷକୁ—

ବନ୍ଧୁପତ୍ନୀ—ଏ' କଣ ?—ତୁମ ଦେହରେ ରକ୍ତ—କେତେର ଦାଗ—?

ବନ୍ଧୁ — ଭଡ଼ ଦେଖି, ସେଇ ମାଧୋଇ ପାଇଁ ବଳ ପଶି ବନ୍ଧୁ ଘର ଭିତରକୁ ପଶିବାର ଚେଷ୍ଟା କଲି, ତା'ର ଏଇ ବଦାକୀ ।

ବନ୍ଧୁ ପତ୍ନୀ—ଛି, ଛି—ତୁମର ବନ୍ଧୁ ଘର, ଏମିତି ଚୋରପଣ କରି ପଶିବାକୁ ହୁଏ ନା ? ବନ୍ଧୁର ମାନ ମହତ ତଳେ ପକେଇଲ ଦିନା ?—ଆସ, ଆସ—ମୁଁ ଧୋଇଦିଏ—

ବନ୍ଧୁ—ଥାଉ ସେମିତି, ବୁଲିଅ ବୋଉ—ଏ' ମୋର ଭୁଲର ପ୍ରାୟଶ୍ଚିତ୍ତ—ଏଥିକୁ ମୁଁ ଲିଭେଇବି ନା—ଯେତେ ଦିନ ଯାଏ ଏ ଦାଗ ମୋ ଅଙ୍ଗରେ ଥିବ—ମୋ' ଭୁଲ, ମୁଁ ବୁଝି ପାରୁଥିବି ।

ବନ୍ଧୁ ପତ୍ନୀ—ତା' ତ ବୁଝିଲି—ହେଲେ, ବନ୍ଧୁ ଯଦି ଏଇଲେ ଡକେଇ ପଠାନ୍ତି, କି ନାକେ ସଙ୍ଗୋଳ ନେବାକୁ ଧାଇଁ ଆସନ୍ତି, ତା' ହେଲେ ?

ବନ୍ଧୁ—ତୁମେ ଏ' ଦେହର ଦାଗ ବେଗେ ବେଗେ ଘୋଡ଼େଇ ପକାଅ—ଲିଭେଇ ଦିଅ, ବୁଲିଅ ବୋଉ—ବନ୍ଧୁକୁ କେତେ ନିନ୍ଦା ହେବ, କେତେ ଅପମାନ ହେବ ।

ବନ୍ଧୁ ପତ୍ନୀ—ଏତେ ଅଥୟ କାହିଁ ? କଳଙ୍କର ଦାଗ ଯିଏ ଅଙ୍ଗେ ଅଙ୍ଗେ ଲିଭେଇଛି, ତାକୁ ଅଙ୍ଗର ସାମାନ୍ୟ ଦେହର ଦାଗ ବଳେଇବ ? ତୁମେ ମଝି ଖୁଣ୍ଟ—ତୁମେ ଏମିତି ହଲିଲେ, ଘର ଟିଆ ହେବ କେମିତି ?

ବନ୍ଧୁ—ଖମ୍ବର ବଳ, ମୂଳ ଖୁଅ—ତୁମେ ଠିକ୍ ଅଛ ଯେତେବେଳେ, ମୋର ବଳ ଠିକ୍ ଅଛି—କେହି ମୋତେ ହଲେଇ ପାରିବେ ନି, ବୁଲିଅ ବୋଉ ।

ବନ୍ଧୁପତ୍ନୀ—( ଅପଣାର ଲୁଗା ପଣତରେ ସ୍ୱାମୀ ଦେହର ରକ୍ତ-ଦାଗ ପୋଛିଦେଲେ ) ଶୋଭ ! ଶୋଭ !—ଓଃ, ଟିକିଏ ଭୋକରେ ଶୋଇ ପଡ଼ିଲା !

(ଶୋଭର ପ୍ରବେଶ )

ଶୋଭ—ନା, ବୋଉ—ପାଇଲି ନା ।

ବନ୍ଧୁ—ଏମାନେ ଖାଇବେ କଅଣ ?—

ବନ୍ଧୁପତ୍ନୀ—ତମର ରାଜା-ବନ୍ଧୁଙ୍କର ରାଜ-ଭୋଗ—

ବନ୍ଧୁ—ବନ୍ଧୁ କ'ଣ ପଠେଇ ଦେଇଛନ୍ତି ?

ବନ୍ଧୁପତ୍ନୀ—ଅମର ପାଇଁ ବାଢ଼ି ରଖିଛନ୍ତି ।—ଶୋଭ ! ସେଠି ଛେଲିଅଟାଏ ପଡ଼ିଛି ଟୋକେଇ ଅଣତ, ମା—ମୁଁ ନଳାରୁ ଛେଳିଏ ଛେଳିଏ ପେଜ ପାଣି ଦିଏ ।

ବନ୍ଧୁ—ପେଜ ପାଣି ?

ବନ୍ଧୁପତ୍ନୀ—ଟୋକି ଖାଇ ଯେତେ ତମର ରାଜାବନ୍ଧୁଙ୍କର ଭାଇ ପିଅର—ପେଜ ନଳାଠେଇଁ ଯେତେ ସେ ବସିବାକୁ ସୁଖ ପାଆନ୍ତି—ପେଜ ତୋରାଣି ନଷ୍ଟେ ତାଙ୍କର ରାଜ-ଭୋଗ !

ବନ୍ଧୁ—ମୋତେ ଛେଲିଅ ଦିଅ—ମୋ'ର ରାଜା-ବନ୍ଧୁର ଅମୃତ-ମଣୋହି ମୁଁ ବାଢ଼ି ଦେବି ସମସ୍ତଙ୍କ ।

( ସମସ୍ତେ ପେଟେ ପେଟେ ପିଇ ଶୋଇ ପଡ଼ିଲେ )

# ପଞ୍ଚମ ଦୃଶ୍ୟ

[ ପୂର୍ବବର୍ତ୍ତୀ ସେହି ପେଜନଲା ଦୃଶ୍ୟର ପାର୍ଶ୍ୱ-
ଦେଶ । ନିଶାଗତ । ବଡ଼ପଣ୍ଡା ଭଙ୍ଗରେ ଢୁଲୁ
ଢୁଲୁ ହୋଇ ପ୍ରବେଶ କଲେ ]

ବଡ଼ପଣ୍ଡା—( ଗୀତ ସ୍ୱରେ )

ପାଚକ ! ଅହା ରେ, ପାଚକ !
ତୋ ମାହାତ୍ମ୍ୟ ଜାଣେ ଏକା ଏ ଦୀନ ସେବକ ।
ଛତିଶା ନିଯୋଗ ନୃପ ଯେ କାଳେ ଖଞ୍ଜିଲେ,
ତୋ'ପର ଗୁଣୀ ଅହା, ସମକ୍ଷ ନ ଥିଲେ—
ସେବକେ ପ୍ରସନ୍ନ ଏବେ ଜଗତନାୟକ,
ଝଞ୍ଜିଲେ ସେବାର ଅଙ୍ଗେ ତତେ ରେ, ପାଚକ ।

ବଡ଼ପଣ୍ଡା—ହୁସିଅର, ହୁସିଅର, ସ୍ତ୍ରୀ ପରିଷ୍କାର—ଭିତର ନିଶା
ସାଇଁ ସାଇଁ, ପାଚକ ନିଶା ଝାଇଁ ଝାଇଁ—ପଣ୍ଡିଙ୍କେ ଭଡ଼େ
ମୂହଁ, ସଖି ସଙ୍କେ୍ୟ ଯିବାପାଇଁ—( ଠିକ୍ ସେହି ସମୟରେ
ସ୍ୱବେଶା ମାହାରଟିଏ ପ୍ରବେଶ କଲା । ବଡ଼ପଣ୍ଡା ନିଶା
ଝୁଙ୍କରେ ତା' ଉପରେ ପଡ଼ି ଯାଉଥିଲେ )

ମାହାରୀ—ହଁ—ହାଁ—

ବଡ଼ପଣ୍ଡା—କିଏରେ ତୁ, ବେହୁପୋ ?

ମାହାରୀ—ବଡ଼ପଣ୍ଡେ !

ବଡ଼ପଣ୍ଡା—ପର !—

ମାହାରୀ—ତମେ ଏତେ ତେଜକର—

ବଡ଼ପଣ୍ଡା—ତମେ ଭୋଜିକି ଅଇସାରୀ ? କହତ, ଧନମଣି ?

( ଗୀତସ୍ୱରେ )

ପିନ୍ଧଛୁ ସ୍ୱର୍ଣ୍ଣୀନ ଶାଢ଼ୀ
କୁଚ କୁମ୍ଭେ କୁମ୍ଭଧଡ଼ି;
ମଥାରେ ଯେ ମଥାମଣି
ଦେଇଛୁ ଓଢ଼ଣି ଟାଣି ।
ଫୁଲଗୁଣା ଦଣ୍ଡି ନାକେ   ଶୋହେ ଗଜ ମୋତି ବେକେ
ଓଠ ରଙ୍ଗ ଅଧର ବେଣୀ   ମନ ମୀନ ନିଏ ଟାଣି ।

ମାହାସ୍ତି—ହଉ ତମର ବାଣୀ ସେତିକି ଥାଉ, ତା' ମନ୍ଦିରକୁ ଏ' ଅଭିସାର ଅଛି ?

ବଡ଼ପଣ୍ଡା—ସବୁ ସାରିଦେଲି, ବେହୁଦୋ, ସବୁ ସାରି ଦେଲି—ଜରତି, ସବୁ ସୁଖ ଦେଲି କରତି ।—ଅନ୍ନେ ପ୍ରଭୁ, ଦେଉଳ ଖବର କ'ଣ କହୁଛି ? ସେ ଖବର ମୁଁ ଏ ଯାଏ ନେଇ ନି କେ—ସେବା ପୂଜା ବିଧିମତେ ବଢ଼ିଚି ତ ?—ଧିପ ଧୂପ—ପଞ୍ଚ ଅବକାଶ—ଚଡ଼ାକି ଲାଗି—ବଡ଼ ସିଂହାର—ପୁଷ୍ପାଞ୍ଜଳି—ଶେଜାଉ— ?

ମାହାସ୍ତି—ମୋତେ ସେ କଥା ପଚୁରୁଛ, ପଣ୍ଡା ସାଆନ୍ତେ—ମୁଁ କିମିତି କହିବି ଭଲା ?—

ବଡ଼ପଣ୍ଡା—ଅଚ୍ଛା, ଭଣ୍ଡାର ଘର ମୁଦମୁଦିଆ ହୋଇଚି କି ନା, ସେ କଥା ?—ସେବକମାନେ ଦୀପ ବହୁଣ୍ଡ଼ି ଧରି ଦେଉଳ ଶୋଧନ କରିଛନ୍ତି ତ ?—କବାଟ ସବୁ ପକେଇଛନ୍ତି ତ ?—ସାଙ୍କୁଳି ଲଗେଇ ଦେଇଛନ୍ତି ତ ?

ମାହାସ୍ତି—ଅନ୍ନ ଭୋଗ ନିଶାଠା ତମର ଭାରି ଜବର ତ ? ନାଗ ଗଉଲ ଦେଇ ସଙ୍ଗ ବାଟିଥିଲ ନା କ'ଣ ?—ଅହେ, ମୋର

ସେବାକଥା ସିନା ମୁଁ କହୁବ—ଅପରର ସେବା କଥା
କମିତ କହୁବ ?—

ବଡ଼ପଣ୍ଡା—ଆଲେ, ଭଣ୍ଡାର ମେଢାପ କଞ୍ଚ ପଢେଇ, ଗୃହଧଣ୍ଡ
ଯାଇଚ କି ନା, ସେ ଖବର୍ଟା ?

ମାହାତ୍ମ—ତମେ କେମିତକା ମଣିଷ ହେ ?—ଶୁଣୁଚ କ'ଣ,
ପଚୁରୁଚ କ'ଣ ?

ବଡ଼ପଣ୍ଡା—ହଁ, ଏତେ ଦମାକ ତୋ'ର ? ସେବା ତୁ କେମିତ
କର ଅଛିକୁ କହୁଛୁ ଏଇଟି, ଏଇକ୍ଷଣି । ଜାଣୁ, ବଡ଼ପଣ୍ଡା ମୁଁ,
ତୁମମାନଙ୍କର ଗଫଲତ ଗ୍ଧଳଙ୍କ କାନକୁ ନେଲେ,
କେମିତକା ମଜା ହେବ ?—ଏକାବେଳକେ ବେଦଖଲ
ଦାସନ, ଜାତ ଦାସନ—( ମାହାତ୍ମ ସେତେବେଳକୁ
ଖସିଯାଇଥା'ଏ )

ବଡ଼ପଣ୍ଡା—ଏଁ—ବେଦ୍ଧପ ଗ୍ଧଳିଗଲା ।—ହଜ' ଥ' ଥ'—( ପୂର୍ବ
ଗୀତର କ୍ରମ ଧର, ତଳ ପରେ ପରେ, ନୂପୁର ଓ ବଂଶୀର
ଧ୍ୱନି ଶୁଣା ଗଲା )

# ଷଷ୍ଠ ଦୃଶ୍ୟ

[ ସେହି ନୂପୁର ଓ ବଂଶୀ ଧ୍ୱନି ମିଳାଇ ଗଲା ।
ଜଣେ ବୃଦ୍ଧ ବ୍ରାହ୍ମଣ ସୁବର୍ଣ୍ଣ ଥାଳରେ ପ୍ରସାଦ
ଧର ଡାକିଲେ । ପେଶ ନଳାର ଦୃଶ୍ୟ ।
ବଡ଼ ମୁହାନ୍ତ ପ୍ରଭୃତ ନିଦ୍ରା ଯାଉଥାନ୍ତି ]

ବ୍ରାହ୍ମଣ - ବନ୍ଧୁ—ବନ୍ଧୁ, ବନ୍ଧୁ।
ବନ୍ଧୁପତ୍ନୀ—ହଇ ହେ, ଶୁଣୁଚ ତ ?
ବନ୍ଧୁ—କ'ଣ ?—
ବନ୍ଧୁପତ୍ନୀ—ତମ ନାଁ ଧରି କିଏ ଜଣେ ଡାକୁଚି ।
ବନ୍ଧୁ—ଏତେ ରାତିରେ, ମୋତେ କିଏ ଡାକିବ ?
ବ୍ରାହ୍ମଣ—ବନ୍ଧୁ।—
ବନ୍ଧୁପତ୍ନୀ—ହେଇ, ଶୁଣ—
ବନ୍ଧୁ—ଆଉ କୋଉ ବନ୍ଧୁ ହୋଇଥିବ—ଏତେ ରାତିରେ,
　　ବନ୍ଧୁ ନାଁ କ'ଣ, ଆଉ କାହାରି ନାହିଁ ? ଶୋଇଲ...
　　ଶୋଇଲ—　　　　　( ପୁଣି ଶୋଇ ପଡ଼ୁଥିଲେ )
ବ୍ରାହ୍ମଣ—ଯାଜପୁରଆ ବନ୍ଧୁ ।
ବନ୍ଧୁପତ୍ନୀ—ଯାଜପୁରଆ ବୋଲି—
ବନ୍ଧୁ—(କାନଡେରି, ସେହି ଡାକ ପୁଣି ଥରେ ଶୁଣି ) ମୋର ବନ୍ଧୁ
　　ଡାକୁ ନାହାନ୍ତି ତ ?
　　( ଗୁଳିଗଲେ ଓ ଥାଳିଆ ଘେନି ପ୍ରବେଶ କଲେ )
ବନ୍ଧୁପତ୍ନୀ—ତମରି ବନ୍ଧୁ ?
ବନ୍ଧୁ—ନା, ଜଣେ ସେବକ—( ଜଗବନ୍ଧୁଙ୍କ କଥା ଭୁଲିଯାଇ )
　　ଦେଖିଲ—ଦେଖିଲ—କି ସୁନ୍ଦର ଭୋଜନ—ନାଡ଼ୁ, ଗଜା,
　　କାକରା, ଅରିସା, ଶାଳୀ ଅନ୍ନ, କେତେ ପ୍ରକାର ଡାଲି,
　　ତୁ'ଣ । ତମେ ଉଠାଅ, ଉଠାଅ, ପିଲାଙ୍କୁ—ମୋତେ ଭାରି
　　ଭୋକ—ମୁଁ ଆଉ ସମ୍ଭାଳି ପାରୁ ନି—
　　　( ଖାଇବାକୁ ଆରମ୍ଭ କରି ଦେଲେ )
ବନ୍ଧୁପତ୍ନୀ—ବୁଲି । ଶୋଭି ।
　　　　( ବୁଲି, ଶୋଭି ଉଠି ବସିଲେ )

ବନ୍ଧୁ—ଅ’ ବୁଲ୍—ଅ’ ଶୋଭ ! ଦେଖିଲୁ, କେମିତ ଭଲ ଭଲ ଖାଇବାର । ଜଣେ ସେବକ ଆମକୁ ଦେଇଛନ୍ତି ।

[ ବନ୍ଧୁପତ୍ନୀ ଛଡ଼ା ସମସ୍ତେ ଖାଇବାକୁ ଲଗିଲେ ]

ବନ୍ଧୁପତ୍ନୀ—ସେଇ ତୁମର ବନ୍ଧୁ ?

ବନ୍ଧୁ—ନ’ଣ, ଯେ ତୁମେ ଜୁହ ? ମୋର ବନ୍ଧୁ ପରା, ରାଜା ।

ବନ୍ଧୁପତ୍ନୀ—ତା’ତ ତୁନା ଥାଳରୁ ଜଣା ପଡ଼ୁଛି ।

ବନ୍ଧୁ—ସତେ ତ !—ଯିଏ ଦେଇଗଲେ, ସେ ତ ଜଣେ ସାଧାରଣ ବୁଢ଼ା ବ୍ରାହ୍ମଣ ।

ବନ୍ଧୁପତ୍ନୀ—ତୁମେ ବୁଢ଼ା, ସାଧାରଣ ବୋଲି, ହୁଏତ ସେଇ ବେଶରେ ବନ୍ଧୁ ଦେଖା ଦେଇଥିଲେ ।

ବନ୍ଧୁ—ନାହିଁ, ବନ୍ଧୁ କେବେ ବନ୍ଧୁକୁ ଠକାଏ ନା । ରାଜା କ’ଣ ପ୍ରଜା ସଙ୍ଗେ ବନ୍ଧୁ ହାନ୍ତି ନା ? ଆମର କଥାକୁ ଦେଖ । ମହାପାତ୍ର ବଂଶ, ଆଉ ମହାନ୍ତି ବଂଶ—ବନ୍ଧୁ ପ୍ରୀତି ଉଭୟ ମଧ୍ୟରେ ପୁରୁଷ ପରମ୍ପରା ; ଅଥଚ ଆମେ ପ୍ରଭୁ, ଭୃତ୍ୟ ।

ବନ୍ଧୁପତ୍ନୀ—ହଉ, ତାଙ୍କୁ ଆଉ କେତେବେଳଯାଏ ଠିଆ କରି ରଖିବ ?—ମୁଁ କୁଣ୍ଡୁଆ ଦାଉଚ, ଥାଳଅଣ୍ଟା ଖାଲି କରିଦିଅ—ମୁଁ ପୋଛି ଦିଏଁ, ଯାଇଁ ଆଗେ ଦେଇଆସ ।

ବନ୍ଧୁ—ଠିକ୍ କହୁଛ ( ବନ୍ଧୁପତ୍ନୀ ନିଜ ଲୁଗା କାନରେ ଥାଳଅଣ୍ଟା ପୋଛି ଦେଲେ ଓ ବନ୍ଧୁ ତାହା ନେଇଗଲେ )

ବୁଲ୍—ଆଉ ଖାଇପାରିବି ନା, ବୋଉ !

ଶୋଭ—ମୁଁ ବି ଆଉ ପାରିବି ନା ।

ବନ୍ଧୁପତ୍ନୀ—ହଉ, ଲୋଭକରି ଆଉ ଖାଅ ନା– ଯା ଥିବ, କାଲି ସକାଳେ ଖାଇବ ।

ବୁଲୁ—ଭାରି ନିଦ ମାଡ଼ୁଛି । ଅ’ ଅପା । ଏକୁଟିଆ ଶୋଇବାକୁ ଡରମାଡ଼ୁଚି ।

ବନ୍ଧୁପତ୍ନୀ—ଯା, ଶୋଭା, ତା ପାଖରେ ଶୋ’ ଯାଇ ।

[ଶୋଭା, ବୁଲୁ ଶୋଇଲେ । ବନ୍ଧୁ ଥାଳିଅ ହସ୍ତେ ପ୍ରବେଶ କଲେ]

ବନ୍ଧୁ—ଦେଖା ପାଇଲି ନ, ବୁଲିଅ ବୋଜ୍ଞ ।

ବନ୍ଧୁପତ୍ନୀ—କେତେ ଦେଖି, ଗୁଲିଯାଇ ଥିବେ ।

ବନ୍ଧୁ—କ’ଣ କରିବ ? କେଉଁଠି ତାଙ୍କୁ ପାଇବି, ଏତେ ରାତିରେ ?

ବନ୍ଧୁପତ୍ନୀ—କାଲି ସକାଳେ ସେ ନିଜେ ଆସି ନେଇଯିବେ, ଚିନ୍ତା କ’ଣ ?

ବନ୍ଧୁ—ସୁନାର ଥାଳୀ, ସେ ନିଶ୍ଚେ ଆସିବେ । ମୁଁ ତା’ ହେଲେ ଥାଳିଟାକୁ ମୁଣ୍ଡତଳେ ରଖି ଶୋଇଚି ।

ବନ୍ଧୁପତ୍ନୀ—ଆମ ହେପାଜତ୍‌ରେ ଯେତେବେଳେ, ସେତେବେଳେ ହୁସିଆର ଥିବା ଭଲ । ହଁ, ଅଜି ଖାଇବ ନି ?

ବନ୍ଧୁ—ନା । ତୁମେ ଖାଅ ଏଥର । ମୋତେ ଭାରି ନିଦ ମାଡ଼ୁଚି ।

ବନ୍ଧୁପତ୍ନୀ—( ନିଜେ ଖାଇବାକୁ ବସି ) ମାଧୋର କଥା ମନେ ପଡ଼ୁଚି । ପିଲଟି ଖାଇ ନ ଥିବ—ମୁଁ କେମିତି ଖାଇବି ? ମାଧୋଇ, ମାଧୋଇ—

( ମାଧୋଇର ପ୍ରବେଶ )

ମାଧୋଇ—ମା, ଭାରି ଭୋକ, ମା ।

ବନ୍ଧୁପତ୍ନୀ—ମାଧୋଇ ? କୁଆଡ଼ି ଥିଲୁ, ବାପ ? ଅ, ଅ ।

ମାଧୋଇ—ହଁ ହୁ—ମୋତେ ମାରିବୁ ।

ବନ୍ଧୁପତ୍ନୀ—ଅରେ, ନା ରେ ନା । ଖାଇନୁ, ମୁହଁ ଶୁଖି ଯାଇଚି, ଅ’ ଅଇଲୁ ।

ମାଧୋଇ—ଖିଆଇ ଦବୁ କହ, ତା’ ହେଲେ—

ବନ୍ଧୁପତ୍ନୀ—କୋଳରେ ବସେଇ ଖୋଇ ଦେବବେ, ବାପ ।

ମାଧୋଇ—ଖାଇ ଖାଇ ଯଦି ସବୁତକ ଖାଇ ଦଏ, ମା—

ବନ୍ଧୁପତ୍ନୀ—ଖୋଇଲେ ମାର ପେଟ ଭରେ—ଖାଇଲେ ନୁହେଁ ।

ମାଧୋଇ—ଭୁଲ, ଶୋଉ ଅପା ପାଇଁ କାଲି ସକାଳରୁ ଅଜ ରହିବ କ'ଣ ?

ବନ୍ଧୁପତ୍ନୀ—ଉମ୍ମା !—କାଲର କଥା କାଲ । ତୁ ଅଗ ଖା'ତ ।

( କୋଳରେ ବସାଇ ଖୁଆଇଲେ )

ମାଧୋଇ—ତୋତେ ମୁଁ ଖୁଆଇ ଦେବି, ମା । ( ଖୁଆଇଲା )

ବନ୍ଧୁପତ୍ନୀ—ମାଧୋଇ !—[ ଅଶ୍ରୁଧାର ଦେଖାଗଲା ]

ଭୁଲ—( ସ୍ୱପ୍ନ ବାଉଳାରେ ) ଭଗ୍ନ ହେଇ, ବୋଉ !—

ବନ୍ଧୁପତ୍ନୀ—ଭୁଲ—( ଭୁଲକୁ ଗୁଡ଼ାଇବାକୁ ଉଦ୍ୟତ ହେଲ ହେଲେ, ମାଧୋଇ ପଳାଇଲା )

ବନ୍ଧୁପତ୍ନୀ—ମଧୋଇ, ମାଧୋଇ !—ମୁଁ କ'ଣ ସ୍ୱପ୍ନ ଦେଖୁଥିଲି ? ଏଁ, ମୋର କୁଡ଼ୁଅ ଖାଲି ! ନିଜ ହାତରେ ନିଜେ ଖାଇଛି ! ଏମିତି ପେଟ ପୁରିକରି କେବେ ତ ଖାଇ ନି ! ସଂସାରଟାକୁ ପେଟରେ ପୁରାଇ ଦେଲି, ନା କ'ଣ ?

## ସପ୍ତମ ଦୃଶ୍ୟ

[ ବଡ଼ଦାଣ୍ଡ । ସକାଳ ହୋଇଯାଇଛି । ବଡ଼ପଣ୍ଡା ଉଚ୍ଛନ୍ନ ହୋଇ ପ୍ରବେଶ କଲେ ]

ବଡ଼ପଣ୍ଡା—ସଂସାର ଉଚ୍ଛନ୍ନ ହୋଇ ଗଲା—ଦାଉଁଙ୍କର ସୁନାଥାଳି ଚୋର—ଅଚ୍ଛା ଭୁଙ୍ଗ କଲି ମୁଁ କାଲି । ବାବା କଥା—

ଭଣ୍ଡାର ଘରେ ମୁଦପଡ଼ୁଛି, ଶୁଣୁଛ ?—ଏ କାଣ୍ଡ ଭଣ୍ଡାର-
ମେଚାପର କାମ । ନା, ମୁଁ ଟିକ୍ ଟିକ୍ କାମ ଅଦାୟ କରେ
ବୋଲି, ମେଚାପ, ଖୁଣ୍ଟିଆ, ବଡ଼ୁ, ପଢ଼ିଅରୀ, ସୁଆର,
ଦଇତା ସମସ୍ତେ ମେଳ ବାନ୍ଧିଛନ୍ତି—ମତେ ବଦ୍‌ନାମି
କରବେ ବୋଲି । ଏ ଗୋଷ୍ଠୀ ଚକ୍ର । ବେହୁପେ—
କେଗାଘର, ଭାଙ୍ଗ ମଜଲ, ମୁଁ କରେ କ୍ଷ ତୁମେ କର,—
ଚାଲ ଗୁମୁଙ୍କ ପାଖକୁ, ଅଜ ସେଇଠି ଗୁଣ୍ଟାମଣା ।—
ମୁଦୁଲିଏ । ହେ ମୁଦୁଲିଏ ।

( ମୁଦୁଲିର ପ୍ରବେଶ )

ମୁଦୁଲି—ଜୁହାର, ଅଜ୍ଞା—

ବଡ଼ପଣ୍ଡା—ଡାକିଆଣ, ଜଣ ଜଣ କରି ସେବକମାନଙ୍କୁ, ଏଇଟିକ୍ଷ—
ବେହୁପେ—

ମୁଦୁଲି—ବେକରେ ଗାମୁଛା ପକେଇ ଘେନି ଅସୁଚି, ସା'ନ୍ତେ ।

( ମୁଦୁଲିର ପ୍ରସ୍ଥାନ )

ବଡ଼ପଣ୍ଡା—ପାକଲା ଗାମୁଛା ଜଡ଼େଇବେ—ଲାଲମୋହନ
ଖେଳେଇବେ—ବେହୁପେ—( ମୁଦୁଲିର ପୁନଃ ପ୍ରବେଶ )

ମୁଦୁଲି—ଶୁଣିବ ଧରି ପଡ଼ୁଛି, ସା'ନ୍ତେ—ଷଣ୍ଢ, ଗାଈ, ବାଛୁରୀ କରି
ପୁଚ୍ଛେ—ଏଇ, ଏଣେ ଅସୁଛନ୍ତି ।

ନେବେ—( ନେପଥ୍ୟେ ) ଖଣ୍ଡ, ବଦ୍‌ମାସ୍—ଅରେ, ଜଲଦ ସାଙ୍କୋଳି
ପିନ୍ଧା—ଦମା ଟୁଅ—ବେହୁପଙ୍କୁ ଶୂଳି ଶୂଳି—

( ମୁଦିରଥର ପ୍ରବେଶ )

ମୁଦିରଥ—ଗୋଲମାଲ ବନ୍ଦକର—ଘେନି ଅସ ।

(ବନ୍ଧୁ, ବନ୍ଧୁପତ୍ନୀ ଶୋଭା ଓ ଗୁଲିର ପ୍ରବେଶ । ଦୁଇଜଣ
ପାଇକ ମଧ୍ୟରୁ ଜଣକ ହାତରେ ସାଙ୍କୋଳି ଥାଏ )

ପାଇକ—ଯାଙ୍କୋଳ ପିନ୍ଧାଇବୁ, ସା’ନ୍ତେ ?

ପଣ୍ଡା—ଅରେ ପଗ୍ଭୁଛୁ କ’ଣ ?—ବେଗେ, ବେଗେ—ଚୋର, ଗଣ୍ଠି ବଦ୍‌ମାସ—

ମୂଢରଥ—ବଡ଼ପଣ୍ଡେ ! ହୁକୁମ୍ ଦେବି ମୁଁ, ନା ତୁମେ ?—

ପଣ୍ଡା—ଆଜ୍ଞା, ଭୁଲ ହୋଇଛି—ଛଡଶା ନିଯୋଗ ନାୟକଙ୍କ ତଳେ ଆପଣଙ୍କ ପାଦୁଅ—ମଜରପି ସେବକ ଅପଣ······

ମୂଢରଥ—ଶୁଣ ପଣ୍ଡେ ! ତୁମେ ଭାଲ୍ ଦେଖିଲକୁ ନ ଯାଇ, କାମରେ ଗପ୍‌ଲତି କରି ଯେଉଁ ଭୁଲ କରିଛ, ସେଥିପାଇଁ, ଏ ଯାଙ୍କୋଳ ତୁମକୁ ଆଗେ ପିନ୍ଧାଇବା ଦରକାର—

ବଡ଼ପଣ୍ଡା—ମତେ—ମତେ— ?

ମୂଢରଥ—ହଁ—ହଁ ତୁମକୁ । ମୁଁ ପଦ୍ମମାଳାଠାରୁ ସବୁ ଖବର ପାଇଛି । —ଛାଡ଼, ଦେଖ ବୃଦ୍ଧ—ତୁମେ ଯା’ କହୁଚ, ତା’ ସ୍ୱପ୍ନ ବୋଲି ମନେ ହେଉଛି—ପ୍ରକୃତ ଚୋର ଯିଏ ହେଉ, ମାଲ ଯେତେବେଳେ ତୁମ ନିକଟରେ, ସେତେବେଳେ, ମୋର କର୍ତ୍ତବ୍ୟ ବୁଝି ପାରୁଥିବ ।

ବନ୍ଧୁ—ଆପଣ ଅଜ୍ଞ ହେଲା କରିବେ ନି ।

ମୂଢରଥ—ଓଃ, କର୍ତ୍ତବ୍ୟ କି କଠିନ, କି ନିର୍ଦ୍ଦୟ—

ବନ୍ଧୁ—କର୍ତ୍ତବ୍ୟ ଅଛି ବୋଲିତ, ମାନବର ହୃଦୟ ଅଛି, ଭାଇ ।

( ଅପଣାର ହାତ ବଢ଼ାଇଦେଲେ )

ପାଇକ—ହୁକୁମ, ସା’ନ୍ତେ ?

ମୂଢରଥ—ଚୁପ୍——ନା—

[ ଇଙ୍ଗିତରେ ହୁକୁମ୍ ଦେଇ, ମୁହଁ ବୁଲାଇ ନେଲେ । ପାଇକ ବାନ୍ଧିବାକୁ ଲଗିଲ ]

ବୁଲି—ବାପା ! ବାପା !

ବନ୍ଧୁପତ୍ନୀ—ବୁଲୁ—( ବୁଲୁକୁ ଅଣ୍ଟାଇଲେ )

ଶୋଭ—( କାନ୍ଦଲେ, କଇଁ କଇଁ ହୋଇ )

ବନ୍ଧୁ—ଶୋଭ ! ତୁ କାନ୍ଦୁଚୁ ?—

ଶୋଭ—ବାପା !—

ବନ୍ଧୁ—ଝିଅ ଘରେ ଥାଇ, ଅଙ୍କ ନିଜକୁ ସମ୍ଭାଳି ଶିଖି ନୁ ?

ଶୋଭ—(ଲୁହପୋଛୁ ଆତ୍ମସମ୍ବରଣ କରିବାକୁ ଲାଗିଲା )

ବନ୍ଧୁ—ବୁଲୁ—

ବୁଲୁ—ବାପା—(ଭୁଣ୍ଡ୍ରାର ପକାଇଲା )

ବନ୍ଧୁ—ବୁଲୁରେ—ଗାଁରେତ ଦେଖିଚୁ, ମୁଁ କେମିତି ଚୋରକୁ ଦଉଡ଼ିରେ ବାନ୍ଧି, ଶାସ୍ତି ଦେଇ ଥାଏ ?

ବୁଲୁ—ତୁମେତ ଚୋରି କର ନ, ବାପା ?

ବନ୍ଧୁ—କରେ।

ବୁଲୁ—କାହିଁକି କର ?

ବନ୍ଧୁ—ପେଟ ଲାଗି।

ବୁଲୁ—ତୁମେ ପେଟଲାଗି ଚୋରି କରିପାର ନା, ବାପା—ଧାନଭଙ୍ଗା ତଥା ଥରେ—

ବନ୍ଧୁ—ତୁ ଗଲୁ, ଗଲୁ ମା ! ଗୁଲ, ମୋତେ ଏଠୁ ଶୀଘ୍ର ନେଇ ଗୁଲ—

ସୁନ୍ଦରଥ—ତୁମକୁ ବି ସାଥିରେ ଯିବାକୁ ହେବ, ମା—

ବନ୍ଧୁପତ୍ନୀ—ପିଲାମାନେ ?—

ସୁନ୍ଦରଥ—ନା—

ବନ୍ଧୁପତ୍ନୀ—ତେବେ···?

ବନ୍ଧୁ—ପିଲାଙ୍କ ଖବର ? ବନ୍ଧୁ ନେବେ—

ବନ୍ଧୁପତ୍ନୀ—ବନ୍ଧୁ ଜାଣିଲେ ତ ?

ବନ୍ଧୁ—ରଜା-ବନ୍ଧୁ ମୋର—ତାଙ୍କୁ ଅଜଣା କ'ଣ ?

ବୁଲୁ—ବାପା—

ବନ୍ଧୁ—ଗ୍ଲ—[ ମୁଦରଥଙ୍କ ନିର୍ଦ୍ଦେଶ ମତେ, ବନ୍ଧୁ ଓ ବନ୍ଧୁପତ୍ନୀଙ୍କୁ ଘେନି ପାଇକମାନେ ଗ୍ଲ ଗଲେ ]

ମୁଦରଥ—ତୁମେ ମୋ କୋଳକୁ ଆସ, ମା—

ବୁଲୁ—କାହିଁକି ?

ଗୋଭ—ଆ' ବୁଲୁ—( ବୁଲୁକୁ କାଖକରି ଗ୍ଲଗଲା )

ମୁଦରଥ—ବଡ଼ପଣ୍ଡେ, ତୁମେ ସବୁ 'ଛତଣା ନିଯୋଗ ନାୟକ'ଙ୍କ ଘରକୁ ଗ୍ଲ, ମୁଁ ଏଇ ପିଲା ଦୁଇଟିର ବନ୍ଦୋବସ୍ତ କରିଦେଇ ଯାଉଛି ।

( ଅନ୍ୟ ସମସ୍ତଙ୍କ ପ୍ରସ୍ଥାନ )

[ ନାରାୟଣ ଓ ସଦାର ବିପରୀତ ଦିଗରୁ ପ୍ରବେଶ ]

ନାରାୟଣ—ତୁ ପୁଣି ମୋ' ସାଙ୍ଗେ ସାଙ୍ଗେ, କାହିଁକି ?—ଏମିତି ଲାଗିରହିଥିବୁ ନା କ'ଣ ?

ସଦା—ଟିକେ ପରେ ଲାଗି ରହିଥିବି, ସା'ନ୍ତେ ।

ନାରାୟଣ—କାହିଁକି ?

ସଦା—ମୋର ମା କହୁଛି ।

ନାରାୟଣ—ମା ?

ସଦା—ହଁ—ମା ଅସନ୍ତୁ । ଦାନ୍ତପନ୍ତ ବେଗି ବେଗି ଘସି ପକାନ୍ତୁ—ଗୋଡ଼ ହାତ ଧୋଇ ପକାନ୍ତୁ । ଘୋଡ଼ା ଝପଟେଇ ଝପଟେଇ ଅସିଛନ୍ତି—ଦେହ ପସ୍ୱସ ହୋଇଥିବ—ଘସି ମୋଡ଼ ଦେବି—ତେଲ ଲଗେଇ ଦେବି ।

ନାରାୟଣ—ଅରେ, ସଦା—ତୁ ମତେ ଏଣିକି ଅଉ ସା'ନ୍ତେ ବୋଲି ଡାକିବୁ ନି ।

ସଦା—ମା ବାଡ଼େଇବ ।

ନାରାୟଣ—'ଭାଇନା' ବୋଲି ଡାକିବାକୁ କହିଲେ ?

ସଦା—ମା କ୍ଷୁଣ୍ଣ ହେବ । ନାଇଁ ଲୋ ମା—ରହ, ମୁଁ ମା'କୁ ପଚାରି ଆସେ ।

( ନିର୍ମଳାର ପ୍ରବେଶ )

ନିର୍ମଳା—କ'ଣ ପଚାରିବୁ କରେ, ସଦା ?—

ସଦା—ସାନ୍ତେ ମୋତେ 'ଭାଇନା' ବୋଲି ଡାକିବାକୁ କହୁଛନ୍ତି ।

ନିର୍ମଳା—ଭାଇନାର କାମ କ'ଣ କରୁଚୁ, ବଡା ତ ?

ସଦା—ଅସ ବେଗେ, ଭାଇନା—ନାଇଁତ ମା ସବୁ ବଣ୍ଟୁର କରିଦେବ । ତମେ ଏତେଦିନ ମା ପାଖେ ରହିଚ—ମା' କଥା କ'ଣ ବୁଝି ନ ? ( ସଦା ଚାଲିଗଲା )

ନାରାୟଣ—ଖୁଡ଼ି । ତୁମେ ବୟସରେ ଏତେ ଶ୍ରେଷ୍ଠ—ମହତ ପଣରେ ଏତେ ବଡ଼ ! ମାଟି ମୁଣ୍ଡାକୁ ବି ସୁନା କରି ଦେଇଚ ।—

ନିର୍ମଳା—ବାଜେ କଥା ଛାଡ଼ । ତୀର୍ଥକୁ ଆସିଛ, ତୀର୍ଥ କଥା ଭାବ ।

ନାରାୟଣ—ଅଚ୍ଛା, ତୁମେ ବାହାଁକି ସଦାବେଳେ ମୋ' କଥା ଭାବ ?

ନିର୍ମଳା—ତୁମେ ସେ ଭାବନାରୁ ମୁକ୍ତ କରିଦେଲେ ହେଲା ।

ନାରାୟଣ—ଘରକୁ ଲକ୍ଷ୍ମୀ ଆଣିବ, ତୁମର ଏଇଭାବନା ତ ?

ନିର୍ମଳା—ମୋର ଏକା ନୁହେଁ—ପ୍ରଜାପାଟଙ୍କ, ସଭିଙ୍କର ।

ନାରାୟଣ—ହେଲେ, ଲୋକେ ବାହା କରନ୍ତି ନିଜ ସୁଖପାଇଁ—

ନିର୍ମଳା—ତୁମେ କରିବ, ତୁମ ଅର ସୁଖପାଇଁ ।

ନାରାୟଣ—ଖୁଡ଼ି !—ତୁମେ ମାନବୀ, ନା ଦେବୀ !—

ନିର୍ମଳା—ସଦା— ( ଡାକିଲା )

( ସଦାର ପ୍ରବେଶ )

ସଦା—ବାପା ତେଣେ ଡାକୁଛନ୍ତି, ତୁ ଏଣେ—ମଝିରେ ମୁଁ କ'ଣ କରେ ?—ପାଣି ତ ବର୍ଷି ଆଇଲା—ତୁ ତ ଭାଇନାକୁ ଧରି ରଖିଚୁ—ଆସତ, ଭାଇନା ।

ନାରାୟଣ—ଖୁଡ଼ୀ, ମତେ ତ ଏଣିକି କାଁଧରି ଡାକିବ—

ନିର୍ମଳା—ଗୋଟେ ସର୍ତ୍ତରେ ।

ନାରାୟଣ—ମୁଁ ବାହା ହେବି, ଏଇ ସର୍ତ୍ତରେ ତ ? ହେଲେ, ପୁଅ ମା ଭିତରେ ତ ସର୍ତ୍ତର ପ୍ରଶ୍ନ ନ ଥାଏ ?

ନିର୍ମଳା—'ନାରଣ' ।

ନାରଣ—ମା—

ସଦା—ମା ବୋଲି ନୂଆ ଡାକିଲ—ଖାଲି ମା'ର ଗୋଡ଼ ଧୂଳି ତ ନେଲ ନି, ଭାଇନା ?

ନାରଣ—ଠିକ୍ କହୁଚୁ, ସଦା । ( ନିର୍ମଳାର ଗୋଡ଼ ଧୂଳି ନେବାକୁ ଯାଉଥିଲେ )

ସଦା—ହଠାତ୍ ହୁହୁ ହୁହୁ—ମାଂଗାଳଦେଇ । ମୁଁ ତମକୁ ନୂଆକରି 'ଭାଇନା' ବୋଲି ଡାକିଲି, ତୁମ ଗୋଡ଼ ଧୂଳି ତ ନେଇ ନି–

[ ଗୋଡ଼ ଧୂଳି ନେଲା । ନାରଣ ମଧ୍ୟ ନିର୍ମଳାର ଗୋଡ଼ ଧୂଳି ନେଲେ ]

( ଗୋବନ୍ଦ ପ୍ରବେଶ କରି )

ଗୋବନ୍ଦ—ଏ କ'ଣ ଦେଖୁଚି ? (ଛାଟକା 'ହୋଇଗଲେ)—ସଦା ମା'କୁ ଚୋରି ନେଇ ଯା'ଉ ।

ସଦା—ସେଇଟିକି ତ, ବାପା ?

ଗୋବନ୍ଦ—ହଁରେ, ଓଲୁ ।

ନିର୍ମଳା—କେଉଁଟିକି ରେ ?

ସଦା—ବାପା ଗାଳିଦେବ—ନାରଣଭାଇନା ଅଛନ୍ତି—ନାରଣ ଘର ଥାଇ, କହିବାକୁ ମନା କରୁଛୁ ।

ନିର୍ମଳ—କି କଥା ?

ସଦା—ଶୋଭ, ଭୁଲ ଯେଉଁଠି ଅଛନ୍ତି, ସେଇ କଥା ।

ଗୋବନ୍ଦ—ସଦା ।

ସଦା—ତମେ ଏଇ କଥା କହିବାକୁ ମନା କରି ନଥିଲ, ବାପା ?

ନିର୍ମଳ—ଆଁ'ତ ସଦା ।—( ସଦା ଓ ନିର୍ମଳର ପ୍ରସ୍ଥାନ )

ନାରାୟଣ—ବଙ୍କା । ତୁମେ ଠିକ୍ କହୁଚ, ଖରା ଘୁରୁଆ ଯାଗା । କାହିଁକି ନା, ଭାଙ୍ଗ ନ ଖାଇ ବି ଲୋକଙ୍କୁ ଭାଙ୍ଗ ନିଶା ଧରେ—ସେଇଥି ଦେଖୁଚ ।

ଗୋବନ୍ଦ—ହେଲେ, ଭାଙ୍ଗ ନିଶାର ସ୍ୱପ୍ନ ମୁଁ ଦେଖୁ ନି, ସା'ନ୍ତେ । ପାହାନ୍ତା ମହରର କନକ ଛଟା ମୋ ଆଖିଆଗରେ— କେବଳ, କଳା ବଉଦଟିଏ ଅନ୍ତରାୟ । ଆପଣ ବସାକୁ ଗୃଲନ୍ତୁ, ମୁଁ ସବୁ ପିଟେଇ କହିବ ।

( ନାରାୟଣ ଓ ଗୋବନ୍ଦର ପ୍ରସ୍ଥାନ )

( ନିର୍ମଳ ଓ ଶୋଭର ପ୍ରବେଶ )

ଶୋଭ—କାହାନ୍ତି ?

ନିର୍ମଳ—ବ୍ୟସ୍ତ ହ'ନା, ଶୋଭ ।

ଶୋଭ—ଏହୁ ଏଣେ ଆସୁଚନ୍ତି—ମୋତେ ତୁମର ଧୈର୍ଯ୍ୟ ଦିଅ, ଧୈର୍ଯ୍ୟମୟୀ—

ନିର୍ମଳ—ଆଶୀର୍ବାଦ କରୁଚ । ( ଗୃଲିଗଲେ )

( ନାରାୟଣ ପ୍ରବେଶ କଲେ ସାବେଗରେ )

ନାରାୟଣ—ଶୋଭ—

[ ଶୋଭ ନମସ୍କାର କଲେ, ଧୈର୍ଯ୍ୟ ଧରି ]

ନାରାୟଣ—(କଥା କହି ପାରଲେ ନାହିଁ, ଆଖିରେ ଲୁହ ଦେଖାଗଲା)

ଶୋଭ—ଛି, କାନ୍ଦୁଚ ?

ନାରାୟଣ—ଶୋଭ—( ଭାଙ୍ଗି ପଡ଼ୁଥିଲେ )

ଶୋଭ—ଭାଇ—

ନାରାୟଣ—( ଅସ୍ପ ସମ୍ବରଣ ପୂର୍ବକ ଲୁଗା ଭାଙ୍କରୁ ସିନ୍ଦୂର ବେଲପତ୍ରୀ ବାହାର କରି ) ମା-ବିରଜାଙ୍କର ରକ୍ତ ସିନ୍ଦୁର, ଲଗେଇ ଦିଅ ତ କପାଳରେ ।

ଶୋଭ—ମୋର ବୁକୁର ପ୍ରୀତ ରକ୍ତରେ ଗୋଳ, ତାହା ଲଗାଇ ଦେବ ।

( ନିଜ ବୁକୁରେ ଛୁଆଇଁ ସିନ୍ଦୂର ପିନ୍ଧାଇ ଦେଲା )

ନାରାୟଣ—ଆଉ ଭୟ ନାହିଁ ଶୋଭ, ମୁଁ ବାହାରିଲି ରାଜସଭାକୁ । ଆଜି ପ୍ରମାଣ କରିବି—ତୁମର ବାପା, ବୋଉ ଚୋର ନୁହନ୍ତି—ଚୋର ମୁଁ । ( ଦ୍ରୁତ ଚାଲିଗଲେ )

ଶୋଭ—ନାରଣ ଭାଇ—ନାରଣ ଭାଇ—( ଅନୁସରଣ କଲେ )

[ ସଦା ଓ ବୁଲି ଗୋଟିଏ ଚଦରକୁ ପିଟେଇ ଧରି ବାନ୍ଧୁ ବାନ୍ଧୁ ପ୍ରବେଶ କଲେ ]

ସଦା—ଧ'ମ, ଖେଳିବା ପରା—

ବୁଲି—ନା, ସଦା ଭାଇ—ବାପା, ବୋଉ ପାଇଁ ମନ କାମିତ ହଉଚି ।

ସଦା—ଖେଳରେ ମନବସା । ବାପା, ବୋଉ ତାଙ୍କର ଖେଳ ଖେଳୁଚନ୍ତି—ଆମେ ଆମର ଖେଳ ଖେଳିବା ।

ବୁଲି—ସଦାଭାଇ । ବାପା ନିଶ୍ଚେ ତାଙ୍କ ମନ କଥା ମୋଠେ ଲୁଚଉଛନ୍ତି । ଭଲ କଥା ମନେ ପଡ଼ୁଚି, ସଦାଭାଇ—ତୁ ଗୋଟିଏ କାମ କରିପାରିବୁ ?

ସଦା—କି କାମ, କହନୁ ନୁ ? ତୋଳ ଗଛରେ ଚଢ଼ି ଅମ୍ବ ପାରିବି, କି ପଣସ ଗଛରେ ଚଢ଼ି ନଡ଼ିଆ ପାରିବି ?

ବୁଲି—ମୋର ମାଧୋଇ ଭାଇକି ଡାକି ଆଣି ପାରିବୁ ?

ସଦା—ମାଧୋଇ ଭାଇ ?

ବୁଲ୍—ହଁ, ସେ ଭଲେ ବାପାର ମନକଥା ଠିକ୍ ଠିକ୍ କହିଦେବ ।

ସଦା—ଅଲୋ, ସେ କାଏ ? ତାକୁ ପାଇବା କୋଉଠୁ ?—ମୋପର ଚୁଅ, ନା ତୋପର ବଡ଼ ?

ବୁଲ୍—ସଦା ଭାଇ । ସେଇ ସିଂହଦ୍ୱାର ମୁହଁକୁ ଚାଲ ତ—ସେଇଠ ସେ ଥିବ ।

ସଦା—ବେଶ୍ ମୁଁ ସିଂହ ହୁଏ, ତୁ ସିଂହବାହିନୀ ହ'—ତେବେ ତ ଯିବା ?

ବୁଲ୍—ଠିକ୍ କଥା ।          ( ସେହି ଭଳି ହୋଇ ପ୍ରସ୍ଥାନ )

## ଅଷ୍ଟମ ଦୃଶ୍ୟ

[ ରାଜସଭା । ପାଞ୍ଚ ମନ୍ତ୍ରୀସହ ରାଜା ପ୍ରତାପରୁଦ୍ର ଦେବ ମହାସମାରୋହରେ ସମାସୀନ । ବିଚାର-ପ୍ରାର୍ଥୀ ବନ୍ଧୁ ମହାନ୍ତି ଓ ବନ୍ଧୁ ପତ୍ନୀ ଏକ ଅଡ଼େ, ଅନ୍ୟ ଅନ୍ୟଅଡ଼େ ନାରାୟଣ ଓ ଗୋବିନ୍ଦ ଦଣ୍ଡାୟମାନ ]

ରାଜା—ଠିକ୍ କଥା କୁହ, ବନ୍ଧୁ !

ବନ୍ଧୁ—ଠିକ୍ କଥା ଯା', ତାହାହିଁ ସମ୍ମୁଖରେ ନିବେଦନ କରିଛି ।

ରାଜା—ଅଚ୍ଛା, ଏହି ଶେଷଥର । ଯା' ଯା' ପ୍ରଶ୍ନ କରୁଛି, ତା'ର ଠିକ୍ ଠିକ୍ ଉତ୍ତର ଦିଅ ।

ବନ୍ଧୁ—ପଚାରନ୍ତୁ ।

ରାଜା—ତୁମେ ଶିଳ୍ପ କୁଟୁମ୍ବ ଘେନି ବନ୍ଧୁ ଘରକୁ ଅସିଥିଲ ?

ବନ୍ଧୁ—ଅଜ୍ଞା ।

ରାଜା—ତୁମ ବନ୍ଧୁଙ୍କର ନାମ ?

ବନ୍ଧୁ—ଜଗବନ୍ଧୁ ।

ରାଜା—ପ୍ରକୃତ ନାମ ତ ?

ବନ୍ଧୁ—ଅଜ୍ଞା ।

ରାଜା—ଠିକ୍ ଜାଣ ?

ବନ୍ଧୁ—ଠିକ୍ ଜାଣେ ।

ରାଜା—ତୁମେ କହୁଚ, ସେ ରାଜା ?

ବନ୍ଧୁ—ଅଜ୍ଞା, "ରାଜା" ।

ରାଜା—ତାଙ୍କୁ କେବେ ଦେଖିଚ ?

ବନ୍ଧୁ—ନା ।

ରାଜା—ଅଥଚ ସେ ତୁମର ବନ୍ଧୁ ।

ବନ୍ଧୁ—ଘନିଷ୍ଠ ବନ୍ଧୁ ।

ରାଜା—ତାଙ୍କର ଘର ?

ବନ୍ଧୁ—ସେହି ନଅର । ( ଦେଖାଇ ଦେଲେ )

ରାଜା—ତାକୁ କହନ୍ତି ବଡ଼ ଦେଉଳ, ଜାଣ ?

ବନ୍ଧୁ—ମୋର ବନ୍ଧୁ ରାଜାଙ୍କର ନଅର, ଏଇ କଥା ଜାଣେ ।

ରାଜା—ତୁମେ ସେହି ନଅର ଭିତରକୁ ଯାଇଥିଲ ?

ବନ୍ଧୁ—ଯିବାର ଚେଷ୍ଟା କରିଥିଲି । କାରଣ ଅନ୍ୟ ।

ରାଜା—କାରଣ ଯାହା ହେଉ, ପାଇକେ ଘଉଡ଼ାଇ ଦେବାରୁ
ପେଛନଳା ପାଖରେ ଅସି, ଶୋଇଥିଲ ?

ବନ୍ଧୁ—ଅଜ୍ଞା ।

ରାଜା—ତା' ପର, କ'ଣ ହେଲା ?

ବନ୍ଧୁ—ରାତ୍ରି ଅଧରେ, ଖଣ୍ଡେ ଦୂରେ ଥାଇ ଜଣେ ସେବକ, ମୋ ନାଁ ଧରି ଡାକଲେ, ମୁଁ ପାଖକୁ ଗଲୁଁ...

ରାଜା—ଏହି ରତ୍ନଥାଳୀରେ ଥାଳୀଏ ଭୋଗ ବାଢ଼ି ଆଣିଥିଲେ, ଥାଳୀଅ ସମେତ ତାହା ବଢ଼ାଇ ଦେଲେ ?

ବନ୍ଧୁ—ଆଜ୍ଞା ।

ରାଜା—ତା'ପରେ ଥାଳୀଟି ଫେରାଇ ଦେବାକୁ ଗଲ, ଦେଖିଲ ସେ ନାହାନ୍ତି ?

ବନ୍ଧୁ—ମଣିମା ।

ରାଜା—( ବନ୍ଧୁ ପତ୍ନୀ ପ୍ରତି ) ମା, ତୁମର ସ୍ୱାମୀ ଯାହା ଯାହା କହି-ଗଲେ, ଏ ବାବଦରେ ତୁମର କିଛି କହିବାର ଅଛି ?

ବନ୍ଧୁପତ୍ନୀ—ଅଛି ।

ରାଜା—କୁହ ।

ବନ୍ଧୁପତ୍ନୀ—ମୋର ବିଶ୍ୱାସ, ଜଗବନ୍ଧୁ ନିଜେ ଆସିଥିଲେ ।

ରାଜା—ତୁମେ ତ ଆଉ ତାଙ୍କୁ ଆଖିରେ ଦେଖିନାହଁ ? ଶୁଣ—ସଭାସଦ୍‌ଗଣ । ଏମାନଙ୍କ ଉକ୍ତିରୁ ବେଶ୍ ବୁଝାଯାଏ ଯେ, ସ୍ୱୟଂ ଜଗତ୍‌ପତି ଜଗବନ୍ଧୁ, ନିଜ କୋଠ ଭଣ୍ଡାରରୁ ନିଜର ରତ୍ନ-ଥାଳୀ ଚୋରିକରି ଆଣି, ତାଙ୍କର ପରମବନ୍ଧୁ ବନ୍ଧୁ ମହାନ୍ତିଙ୍କୁ ଦେଇ ଅନ୍ତର୍ଦ୍ଧାନ ହୋଇଥିଲେ । 'ଜଗବନ୍ଧୁ' ନାମରେ ଯେତେବେଳେ ଆମର କୌଣସି ସେବକ ନାହାଁନ୍ତି, ଏବଂ ତାଙ୍କୁ ଚିହ୍ନାଇଦେବାକୁ ଏ' ବୃଦ୍ଧ ମଧ୍ୟ ଅକ୍ଷମ, ସେତେବେଳେ ଜଗତ୍‌ପତି ଜଗବନ୍ଧୁଙ୍କ ଉପରେ ସମସ୍ତ ଦୋଷ ବର୍ତ୍ତୁଛି । ମାତ୍ର, ଜଗବନ୍ଧୁଙ୍କୁ ଆମେ ଦୋଷୀ ସାବ୍ୟସ୍ତ କରି ନ ପାରୁ । ଯେହେତୁ, ଅସାମୀ ନିଜ ମୁହଁରେ ସ୍ୱୀକାର କରୁଛି ଯେ,

ଉଭୟଙ୍କ ମଧ୍ୟରେ କେବେ ହେଲେ ଦେଖା ସାକ୍ଷାତ୍ ହୋଇନାହିଁ ।

ବନ୍ଧୁ—ମାନ୍ୟ, ଘନିଷ୍ଠ ସମ୍ବନ୍ଧ ଅଛି, ମହାରାଜ ।

ରାଜା—ଘନିଷ୍ଠ ପ୍ରୀତି ମଧ୍ୟ ?

ବନ୍ଧୁ—ତା' ନ ହେଲେ, ଶୁନ୍ୟେ ଶୁନ୍ୟେ ସେ ବାଟ କଢ଼େଇ ଅଣି ନ ଥାନ୍ତେ ।

ରାଜା—ଶୂନ୍ୟେ ଶୂନ୍ୟେ ଭଟ୍ଟଥାଳୀ ମଧ୍ୟ ଦେଇ ନ ଥାନ୍ତେ ?— କିଏ ଅଛ ? ବାନ୍ଧ ଏହି ଗାଲୁଆ, ବାହାପିଅ, ତସ୍କରକୁ । ତୁମର ଦଣ୍ଡ—

ନାରାୟଣ—ଦଣ୍ଡେ ଅପେକ୍ଷା, ମହାରାଜ !

ରାଜା—ଯୁବକ, ତୁମର ସବୁ କଥା ମନ ଦେଇ ଶୁଣିଛି । ବାଳବାଟି ପାଇଁ ଅବଶ୍ୟ ଦୁଃଖିତ—ହେଲେ, ତୁମରଚରିତ୍ର ସଂଶୋଧନ ଦେଖି ଆନନ୍ଦିତ ।

ନାରାୟଣ—ଅଧିକ ଆନନ୍ଦିତ ହେବେ, ଯଦି ମୋତେ ଦଣ୍ଡ ଦିଅନ୍ତି ।

ରାଜା—ତୁମେ ତ ଆଉ ଚୋରି କର ନାହିଁ ?

ନାରାୟଣ—ଚୋରି କରିଛି, ମୁଁ ।

ରାଜା—କିପରି ?

ନାରାୟଣ—ଅନ୍ଯ ଯଦି ଏହି ମହାଜନ ଚୋରି କରିଥା'ନ୍ତି, ତେବେ କରିଛନ୍ତି ଅଭାବରୁ ।

ରାଜା—ଅଭାବରୁ ସ୍ୱଭାବ ନଷ୍ଟ ହୁଏ, ଏ'କଥା ଯେ ଦଣ୍ଡ ଦେଲା-ବେଳେ, ବିଚାର ନ କରିବ, ତା ନୁହେଁ ।

ନାରାୟଣ—ତେବେ, ଅଭାବ ଯେ ସୃଷ୍ଟି କରିଛି, ତା' କଥା ମଧ୍ୟ ବିଚାର କରିବାକୁ ସଙ୍କୋଚ କରିବେ ନାହିଁ, ମହାରାଜ ।

ରାଜା—ତାହାହେଲେ, ତୁମେ ବି ଚୋର, ଏହିକଥା କହିବାକୁ ଚାହଁ ?

ନାରାୟଣ—ଅସଲ ଚୋର, ମହାରାଜ !—ଥରେ ସୂକ୍ଷ୍ମ ଦୃଷ୍ଟିରେ ବିଚାର କରି ଦେଖନ୍ତୁ,—ଆମେ ଏ ଜଗତରେ କ'ଣ କରିଥାଉଁ ? ଯାହା ସ୍ଥୂଳ ଦୃଷ୍ଟିରେ ଦେଖାଯାଏ—ସାଧାରଣ ବୁଦ୍ଧିରେ ଯାହାକୁ ହିଁ ସତ୍ୟ ବୋଲି ଜାଣି, ତା'ର ବିଚାର କରିଥାଉଁ; କିନ୍ତୁ ଅନେକ ସମୟରେ, ବାହାରେ ଯା' ପ୍ରକାଶ ପାଏ—ତାହା ଯେ ମିଥ୍ୟା—ଅନ୍ତର୍ନିହିତ ତଥ୍ୟର ବିକୃତ ଛାୟା, ସେ କଥା ଭାବିଦେଖୁନା ! ଆମେ ଚୋରକୁ ଶାସ୍ତି ଦେଉଁ—ରାଷ୍ଟ୍ର ବଞ୍ଚାଏ, ସମାଜର ହିତ ବଞ୍ଚାଏ; କିନ୍ତୁ, ଅସଲ ଚୋରକୁ ଛାଡ଼ିଦେଇ, ନକଲି ଚୋରକୁ ଦଣ୍ଡିବା ଦ୍ୱାରା, ଆମେ ସେହି ଉଦ୍ଦେଶ୍ୟ କେତେଦୂର ହାସଲ କରିପାରିବୁ, ତା' ଥରେ ବିଚାର କରି ଦେଖନ୍ତୁ, ମହାରାଜ !

ରାଜା—ଅଚ୍ଛା, ତୁମେମାନେ ଯାଇ ଅନ୍ୟତ୍ର ଅପେକ୍ଷା କର—ମୋତେ ଟିକିଏ ଭାବିବାକୁ ଦିଅ । ( ରାଜା ବ୍ୟତୀତ ସମସ୍ତ ଚାଲିଗଲେ ) ଏକପକ୍ଷରେ, ବୃଦ୍ଧର ଅତିଭୌତିକ ଚୌର୍ଯ୍ୟକଥା—ଅନ୍ୟପକ୍ଷରେ, ଯୁବକର ଚୌର୍ଯ୍ୟ ସମ୍ବନ୍ଧେ ଅତି ଗୂଢ଼ ତଥ୍ୟ;—କେବେ ଅତି ସାଧାରଣ ଚୋରଟି କିଏ ?

ବୁଲି—( ବୁଲିବ ବେଗେ ପ୍ରବେଶ ) ମାଧୋଇ—ମାଧୋଇ ଚୋର ଅଛନ୍ତି, ରାଜା !—ତୁମେ, ରାଜା ?

ରାଜା—[illegible]

ବୁଲି—ମୁଁ ବୁଲି—ଚୋରକୁ ବାନ୍ଧି ଅଣିଛି । କାହିଁ, କାହିଁ ଗଲ, ଚୋରମାଧୋଇ ? ( ଚାଲିଗଲା )

ରାଜା—ଚୋର ମାଧୋଇ ?—ମାଧୋଇ, ଚୋର !

[ ଚମକିତ ହୋଇ ଉଦ୍‌ଭ୍ରାନ୍ତ ହେଲେ । ସ୍ୱପ୍ନ ଦେଖିଲେ— ବାନ୍ଧରେ ଯେଉଁଠି ଜଗନ୍ନାଥ ପଡ଼ି ଥିଲା, ତାହା ଅନ୍ତର୍ହିତ ହୋଇଗଲା । ସେହିଠାରେ ମାଧୋଇ ନିଜରୂପରେ ଦେଖା ଦେଇ କହିବାକୁ ଲାଗିଲେ— ]

ମାଧୋଇ—ହଁ ରଜା । ତୁମର ପ୍ରିୟ ମାଧୋଇ-ରଜା ମୁଁ— ଯେଉଁ ନାମରେ ମୋତେ ଡାକିବାକୁ ତୁମେ ଗର୍ବ କର, ସେହି ମାଧୋଇ-ରଜା । ଶୁଣ, ରଜା !—ବନ୍ଧୁ ମହାନ୍ତି ମୋ'ର ପରମ ବନ୍ଧୁ— ସେ ଭାର୍ଯ୍ୟା ସହିତରେ ପିଲା ଛୁଆଙ୍କୁ ଘେନି ମୋ ଘରକୁ ଅଛନ୍ତି ।—ମୁଁ ନିଜେ କାଲି ମୋ ଦଣ୍ଡାରୁ ଭଲ ଭଲ ଭୋଗ କାଢ଼ି ରଖିଥିଲି— ସେବକେ ଦେଉଳ ବନ୍ଦ କରି ଚଳିପରେ, ନିଜ ଥାଳରେ ତାହା ବାଢ଼ି, ବନ୍ଧୁଙ୍କୁ ଦେଇଥିଲି । ବର୍ତ୍ତମାନ ସେହି ପ୍ରେମର କଥା ଛାଡ଼ି, ବନ୍ଧୁ ସମାଦରରେ, ବନ୍ଧୁ-ଚୋର କର । ]

ରଜା—ମାଧୋଇ-ରଜା—ମାଧୋଇ-ରଜା !

[ ଜଗନ୍ନାଥ ପଡ଼ିଅଛନ୍ତି ଚାହିଁ ଦେଖିଲେ, ମାଧୋଇ ନାହିଁ ]

ଏ କି ଅଦ୍ଭୁତ ସ୍ୱପ୍ନ !

## ନବମ ଦୃଶ୍ୟ

[ ବଡ଼ଦାଣ୍ଡ । ମୁଦିରଥ, ବନ୍ଧୁ ଓ ବନ୍ଧୁପତ୍ନୀ ସଙ୍ଗରେ ଘେନି ପ୍ରବେଶ କଲେ । ବନ୍ଧୁ ଓ ବନ୍ଧୁପତ୍ନୀଙ୍କର ନୂଆ ପରିଧାନ ଥିଲା ]

ବନ୍ଧୁ—ମୁଁ ସ୍ୱପ୍ନ ଦେଖୁନାହିଁ, ମୁଦିରଥେ ?

ମୁଦରଥ—ଅପଣ, ଯାହା ସତ୍ୟ, ତାହାହିଁ ଦେଖୁଛନ୍ତି ।

ବନ୍ଧୁ—ବୁଲିଅ ବୋଲି ତୁମେ ବ ସେ ଗ ତା କହୁଚ, ମୁଁ ଜାଣେ ।

ବନ୍ଧୁପତ୍ନୀ—ମନ ଥୟ କର—ବସ୍ତାସବୁ ମୂଳକର ।

ବନ୍ଧୁ—ହେଲେ, ମୁଁ ଗୋଟାଏ ପ୍ରଶ୍ନ କରେ, ଉତ୍ତର—ମୋତେ ବନ୍ଧ ସକାଳୁ ଉଠାଇ—ତୀର୍ଥ ଜଳରେ ସ୍ନାନ କରାଇ—ସୁଗନ୍ଧିତ ବାସ ପିନ୍ଧାଇ, ଏତେ ମର୍ଯ୍ୟାଦା ଦେଖାଇବାର କାରଣ, ମୁଦରଥେ ?

ମୁଦରଥ—ମୋତେ ପଚାରୁଛନ୍ତି, ଅବଧାନେ ?—ମୁଁ କହୁଚ, ମଣିମାଙ୍କ ହୁକୁମ ।

ବନ୍ଧୁ—"ମଣିମାଙ୍କ ହୁକୁମ"—ବୁଲିଅ ବୋଲି । ଏଥର ବୁଝିଲି, ଖଣ୍ଡ ଉତ୍ତରକୁ ଦଣ୍ଡଦେବା ଆଗରୁ, ତାକୁ ଏମିତି ସଜେଇ ପରିହାସ କରିବା ଏଠା ନିୟମ । ଚାଲନ୍ତୁ ରାଜସଭାକୁ, ମୁଦରଥ ଅଦଣେ !      ( ସମସ୍ତଙ୍କର ପ୍ରସ୍ଥାନ )

( ଗୋବନ୍ଦ ଓ ନିର୍ମଳର ପ୍ରବେଶ )

ଗୋବନ୍ଦ—ତୁମେ ଅଜି ଡେରି କରିନା, ନିର୍ମଳ—ମୁଁ ଯେମିତି କହିଲି, ତୁମେ ଠିକ୍ ସେମିତି ସଜେଇ ଶୋଇକୁ ଦେଉଳକୁ ନେଇଅସ—ଏ' ମହାରାଜାଙ୍କର ଅଜ୍ଞା-ଚହାଳି ।

ନିର୍ମଳ—ଦେଉଳକୁ ଯିବ—ଏତେ ସବୁ ହେଙ୍ଗାମ ?

ଗୋବନ୍ଦ—ମୁଁ କି ଜାଣେ ?

ନିର୍ମଳ—ଦେଖ, ସେ ଗୁଲିଲ ଅଜି ତା' ପାଖରେ ଖଟେଇବ, ନିର୍ମଳ ପାଖେ ନୁହେଁ ।

ଗୋବନ୍ଦ—ତେବେ, ଅଗୁଳିକ କଥାଟି କହେଁ ।

ନିର୍ମଳ—କ'ଣ ?

ଗୋବନ୍ଦ—ସ୍ୱାଧାରୁ ଅଳଙ୍କାର ପତ୍ର ଅସିଛୁ, ଶୋଭ ଯେନ୍‌ବ ।—
ତୁମେ ଯଦ ଭ୍ରମର ବାହାଦନର ସେହ୍ର ମଥାମଣିଟି
ଅଜ ଯେନନ୍ତ—

ନର୍ମଳ—ବୂଢ଼ା ଦନେ···କ'ଣ କହନ୍ତ ଅଜ ?

( ଗ୍ଲଲ୍ୟାଉଥିଲେ )

ଗୋବନ୍ଦ—ନର୍ମଳ—

ନର୍ମଳ—ଅହେ, ପୁଅ ଝିଅର ବାପହେଲ, ବୁଢ଼ା ନୁହଁ ?—ସେହ
ଅମୂଲ୍ୟ ମଥାମଣିଟି ମାଗ୍ ଅଜ ମୋର ଝିଅ ଶୋଭ ମଥାରେ
ମଣ୍ଡି ଦେଇଛୁ । ( ପଦଧୂଳି ନେଇ ଗ୍ଲଲଗଲେ )

ଗୋବନ୍ଦ—( କ୍ଷଣକାଳ ଗୃହଁ ରହ ) ମୁଁ ଯେ ଅନନ୍ଦ ସମ୍ଭାଳ
ପାରୁ ନ—ମୋତେ ଧର, ନର୍ମଳ ।

( ଅଧୀର ଭାବରେ ପ୍ରସ୍ଥାନ )

## ଦଶମ ଦୃଶ୍ୟ

[ ବଡ଼ଦେଉଳ--ଜଗମୋହନ ଦୃଶ୍ୟ । ଜଗନ୍ନାଥ-
ଦେବଙ୍କର ପହଡ଼ ପଡ଼ୁଥିଲା । ନାରାୟଣ ଓ
ରାଜା ଉପସ୍ଥିତ ଥିଲେ ]

ନାରାୟଣ—ଶ୍ରୀମୁଖର ଅଦେଶ, ଅକ୍ଷରେ ଅକ୍ଷରେ ପାଳନ କରଛୁ—
ବେଶ ବିନ୍ୟାସରେ, ମହାପାତ୍ର-ବଂଶର ମର୍ଯ୍ୟାଦା ଅକ୍ଷୁଣ୍ଣ
ରଖିଛୁ । ଏଥର ମୁଁ ବିଗ୍ଦ୍ରର ପ୍ରାର୍ଥୀ ।

ରାଜା—ତୁମେ ଦୋଷୀ ।

ନାରାୟଣ—( ଅବନତ ହେଲେ )

ରାଜା—ତୁମର ଅପରାଧ, ଗୁରୁତର ।

ନାରାୟଣ—( ଅଧିକ ଅବନତ ହେଲେ )

ରାଜା—ଶାସ୍ତି ପାଇଁ ପ୍ରସ୍ତୁତ ?

ନାରାୟଣ—( ସିଧା ହୋଇ ଠିଆ ହେଲେ )

ରାଜା—ବାକ୍ୟ ଉଚ୍ଚାରଣ କରିପାରିବ ନାହିଁ ।

ନାରାୟଣ—( ମଥାହଲାଇ ସମ୍ମତିଜ୍ଞାପନ କଲେ )

ରାଜା—ବେଶ୍, ଶାସ୍ତି ଗ୍ରହଣ କର । ଗୋବିନ୍ଦ !

( ଗୋବିନ୍ଦର ପ୍ରବେଶ )

ଗୋବିନ୍ଦ—ମଣିମା !

ରାଜା—ପ୍ରସ୍ତୁତ ?

ଗୋବିନ୍ଦ—ପ୍ରସ୍ତୁତ ମଣିମା !—ନିର୍ମଳ !

[ ନିର୍ମଳ ଶୋଭକୁ ନେଇ ପ୍ରବେଶ କଲା—ଫୁଲ ଗହଣାରେ, ଶୋଭର ଶୋଭା ବଢ଼ି ଯାଇଥିଲା । ନିର୍ମଳର ମଥାମଣି ଛଡ଼ା ଅନ୍ୟ କୌଣସି ଚିହ୍ନ ତା' ଦେହରେ ନ ଥିଲା ]

ରାଜା—ମା ! ତୁମେ ମହାନ୍ତି ବଂଶର ପବିତ୍ର କୁସୁମ—ତୁମର ଶୁଭ୍ର-ନାମରେ କଳଙ୍କ ଲେପି ଦେଇଛି, ଏହି ଉନ୍ମାଦ ତୁମର । ତୁମେ ଠିଆ ହୁଅ, ଉନ୍ନତ ମସ୍ତକରେ—ଲଜ୍ଜା ସଙ୍କୋଚର ଉର୍ଦ୍ଧ୍ୱେ । ତୁମର ବଂଶ ମର୍ଯ୍ୟାଦା, ଅଜି ତୁମେ ରକ୍ଷା କରିବ ।

( ଶୋଭ ମସ୍ତକ ଉନ୍ନତ କଲେ )

ଉଦ୍ଧତ ଯୁବକ ! ଅସ ସମ୍ମୁଖକୁ । ତୁମର ଶାସ୍ତି ଗ୍ରହଣ କର । ବିମଳାକ୍ଷୀଙ୍କର ଏହି ପଦ ସିନ୍ଦୂର ଧାରଣ କରି କୁମାରୀର ଶୁଭ୍ର ଲଲାଟରେ ତାହା ଅଙ୍କିତ କରିଦିଅ । ମହାନ୍ତି

ବଂଶର କଳଙ୍କ ଦୂରକର—ମହାପାତ୍ର ବଂଶର ମର୍ଯ୍ୟାଦା ରକ୍ଷାକର ।—ଏହା, ବଗୁରବଙ୍କର ଆଦେଶ ।

( ନାରାୟଣ ସେହିପରି କଲେ )

ନାରାୟଣ ଓ ଶୋଭ —( ରାଜାଙ୍କର ପାଦବନ୍ଦନା କଲେ )

[ ମୂଦରଥ, ବନ୍ଧୁ ଓ ବନ୍ଧୁପତ୍ନୀଙ୍କର ପ୍ରବେଶ ]

ବନ୍ଧୁ—ଯେଉଁ ଗ୍ଳାଲ, ମୋତେ ଏଠୁ ଯେଉଁ ଗ୍ଳାଲ । ରାଜମର୍ଯ୍ୟାଦା ମୁଁ ସହିଛି; କିନ୍ତୁ ଏ'ପରି ଭାବରେ ବନ୍ଧୁ-ମର୍ଯ୍ୟାଦା ମୁଁ ସହି ପାରିବି ନା । ବନ୍ଧୁଘର—ବନ୍ଧୁ ନିକେ ଆସି ବନ୍ଧୁକୁ ମାରିଛିଟି ଯେଉଁ ଯିବାକୁ ଭାଜନ, ଅନ୍ୟ କେହି ନୁହେଁ ।

ବନ୍ଧୁପତ୍ନୀ—ଏଣେ ଥରେ ଚାହିଁ ଦେଖ, ତୁମର ବନ୍ଧୁଙ୍କର ପରିଗୁଣ ।

( ନାରାୟଣ ଓ ଶୋଭ ଏକଥା ପ୍ରଣାମ କଲେ )

ବନ୍ଧୁ—ମଣିମା, ମୋତେ ଏବେ ବିଦାୟ ଦିଅନ୍ତୁ । ବନ୍ଧୁ ହୋଇ, ବନ୍ଧୁଘରେ ଏତେ ଅପମାନ ସହିପାରିବି ନା । ବନ୍ଧୁ, ମୋତେ ଦେଖା ଦେବାକୁ ନାରାଜ—କେବଳ ଏହି ଭଳି ସୁଖ ସମ୍ପଦରେ ଭୁଲାଇ ବିଦାୟ କରି ଦେବେ, ଏହାହିଁ ତ ତାଙ୍କର ଅଭିପ୍ରାୟ । ମୋତେ ବଗୁର ସ୍ଥାନକୁ ଶୀଘ୍ର ପଠାଇ ଦିଅନ୍ତୁ, ମହାରାଜ ।

ରାଜା—ଏହି ତ ଉପଯୁକ୍ତ ବିଗ୍ଳର ସ୍ଥାନ । ଚୋରର ବିଗୁର, ଚୋର ସ୍ଥାନରେ ହେବାହିଁ ଉଚିତ ।

( କୁଲିର ପ୍ରବେଶ )

କୁଲି—ରାଜା, ଚୋରକୁ ଧରି ଆଣିଛି । ବିଗୁର କର, ଦଣ୍ଡ ଦିଅ । ବାପାଙ୍କୁ ଛାଡ଼ିଦିଅ ।

ରାଜା—କାହିଁ ସେ ଗୌରବ, ମା ?

ବୁଲି—ସଦାଭାଇ, ସଦାଭାଇ !—ଘେନିଅ' ଗୌରବକୁ—

( ସଦାର ପ୍ରବେଶ )

ସଦା—ଗୌରବ ମୋ ହାତକୁ କାମୁଡ଼ି ଦେଇ ପଳେଇଗଲା ବୁଲି—ଏଇଅଛେ ।

ବୁଲି—ଗୌରବ ମାଧୋଇ, ଗୌରବ ମାଧୋଇ—( ଧାଇଁଗଲା )

ବନ୍ଧୁ—ମାଧୋଇ ଗୌରବ ?

ରାଜା—ହଁ ତୁମର 'ଜଗବନ୍ଧୁ' ।

ବନ୍ଧୁ—ମାଧୋଇ, ମୋର ଜଗବନ୍ଧୁ !

ରାଜା—ଦେଖିବ ଅସ !—ଦେଖିଲ ? [ ପରଦା ଫିଟିଗଲା । ଦାରୁମୂର୍ତ୍ତି ଦେଖାଗଲେ ]

ବନ୍ଧୁ—ନା, ନା, ଏ'ତ ଦାରୁମୂର୍ତ୍ତି ।

ରାଜା—ଭଲ କରି ଚାହିଁ ଦେଖ ।

[ ଜଗବନ୍ଧୁ ମୂର୍ତ୍ତି ପରିବର୍ତ୍ତେ ମାଧୋଇ ମୂର୍ତ୍ତି ଦେଖାଗଲେ ]

ବନ୍ଧୁ—ବନ୍ଧୁ, ବନ୍ଧୁ ! ସମ୍ପଦେ, ବିପଦେ ତୁମେହିତ ଚିରବନ୍ଧୁ, ବନ୍ଧୁତ ମୋର । ଅନ୍ଧ ମୁଁ—ତୁମକୁ ଚିହ୍ନି, ଚିହ୍ନି ପାରି ନି—ଧରି, ଧରି ପାରି ନି । ( ଆଲିଙ୍ଗନ କରିବାକୁ ଧାଇଁ ଯାଉ ଥିଲେ, ଏହି ସମୟରେ ବୁଲି ଗଣ୍ଡିଲଟା ନେଇ ପ୍ରବେଶ କଲା )

ବୁଲି—ବାପା, ମାଧୋଇଙ୍କି ପାଇଲି ନି—ସେ ଏଇଠି ଲୁଚି ଉଭେଇ ଗଲା ।

ସଦା—ଭାଳିଅ ଠୋକାଟା, ଭାଙ୍ଗି ଦେଇଁଥ—

ବୁଲି—ଏଇ ଗଣ୍ଡିଲକୁ ପାଇଲି—ଦେଖ ତ ବାପା, ସବୁ ଠିକ୍ ଠିକ୍ ଅଛି ତ ନା ? ସେ ଭାରି ଗୌରବ ।

( ଗଣ୍ଡିଲ ଖୋଲି ଦେଲା )

ନାରାୟଣ—ହଁ । ଏଇ ତ ବୋଉର ସେଇ ଅଳଙ୍କାର ପଞ୍ଜା । ଚଟି ଉଠେ ଯେଉଁ ଗଣ୍ଠିଲି ଛାଡ଼ିଦେଇ ଯାଇଥିଲି, ସେଇଥିରେ ବନ୍ଧାଥିଲା ।

ଶୋଭା—ବାପା, ତୁମର ଲେଖନ ।

ବନ୍ଧୁ—ବନ୍ଧୁ । ଏତେ ବନ୍ଧୁ-ପ୍ରୀତି ତୁମର ?—ବନ୍ଧୁର କୌଣସି ବାସନା ଅପୂର୍ଣ୍ଣ ରଖିଲ ନା । ଏହି ଲେଖନ ସଙ୍ଗେ ଦୁଇଟି ବଂଶର ସ୍ମୃତି ଜଡ଼ିତ ରହିଛି । ସେହି ମହାପାତ୍ର ଓ ମହାନ୍ତି ବଂଶ ତୁମର ପାଇଁ ଆଜି ଘନିଷ୍ଠ ସୂତ୍ରରେ ମିଳିତ । ଏହି ଲେଖନ ହେଉ ମିଳନର ଚିର ସ୍ମାରକ ହୋଇ ରହୁ ।

ରାଜା—ହଁ, ବନ୍ଧୁ-ବନ୍ଧୁ ମିଳନର ଚିର ସ୍ମାରକ ରୂପେ ଆଜିଠାରୁ ମୁଁ ଏହି ବ୍ୟବସ୍ଥା କରିଦେଲି ଯେ, ବନ୍ଧୁଙ୍କ ମାଦଳା ପାଞ୍ଜି ଲେଖିବାର ଭାର ତୁମର ଉପରେ ନ୍ୟସ୍ତ ହେଲା— ଏବଂ ତୁମର ବଂଶଧର-ମାନେହିଁ କେବଳ 'ଦେଉଳ-କରଣ' ନାମରେ ଅଭିହିତ ହୋଇ, ବଂଶ ପରମ୍ପରାରେ ସେହି କାର୍ଯ୍ୟର ଅଧିକାରୀ ହେବେ ।

"ବନ୍ଧୁ ବନ୍ଧୁର ବନ୍ଧୁ ପ୍ରାଣେ—ଅତ୍ୟନ୍ତ ମନର ହରଷେ"

[ ରାଜା ଭିତରକୁ ଗଲେ—ସମସ୍ତେ ପ୍ରଣତ ହେଲେ ]

—ଯବନିକା—

ଶ୍ରୀ ହରନାଥ ପ୍ରେସରେ, [redacted] ଦୋହଙ୍କ ଦ୍ୱାରା ମୁଦ୍ରିତ